# ଅଭୁଲା ସ୍ମୃତି



ଲେଖିକା

ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର

Digitized by PPRACHIN, SOA

# ଅଭୁଲା ସ୍ମୃତି

ଲେଖିକା :
**ପ୍ରିୟମ୍ବଦା ମିଶ୍ର**

ପ୍ରକାଶିକା :
**ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର**
ପ୍ଲଟ ନମ୍ବର ୨୧୩୦/୪୧୫୮
ବିବେକାନନ୍ଦ ମାର୍ଗ,
ଭୁବନେଶ୍ୱର
ଫୋନ୍ : (୦୬୭୪) ୨୪୩୧୧୫୩

ମୁଦ୍ରଣ :
**ବିବରଣୀ ପ୍ରକାଶନୀ**
ଟଙ୍କପାଣି ରୋଡ଼, ଭୁବନେଶ୍ୱର

ମୂଲ୍ୟ : ଟ. ୧୦/-

Digitized by PPRACHIN, SOA

# ଉତ୍ସର୍ଗ

ସ୍ୱାମୀ କାହ୍ନୁଚରଣ ମିଶ୍ର ସ୍ୱର୍ଗାରୋହଣ କରିବା ଚାହୁଁ ଚାହୁଁ ଷଷ୍ଠ ବର୍ଷ ହୋଇଗଲା। ମଣିଷ ଜୀବନରେ ସୁଖ, ଦୁଃଖ, ଝଡ଼ଝଞ୍ଜାରେ ଅତିବାହିତ କଲେ ମଧ୍ୟ ସ୍ୱାମୀ ସ୍ତ୍ରୀର ଯେଉଁ ସମ୍ପର୍କ ସ୍ୱାମୀ ଗଲେ ସ୍ତ୍ରୀ ଭୁଲିପାରେ ନାହିଁ କି ସ୍ତ୍ରୀ ଗଲେ ସ୍ୱାମୀ ଭୁଲିପାରେ ନାହିଁ। ସେହିପରି ଷାଠିଏ ବର୍ଷ ତାଙ୍କ ସାଙ୍ଗରେ ଚଳି ଆସିଛି ସଂସାର କରି ସ୍ନେହଶ୍ରଦ୍ଧାରେ। ସେ ସ୍ନେହଶ୍ରଦ୍ଧା ଭୁଲିବି କିପରି ? ମୁଁ ଜାଣୁଛି ମୋତେ କେଉଁଥିରେ ସେ ଅଭାବ କରି ଯାଇନାହାନ୍ତି। ଘରଦ୍ୱାର, ପଇସାପତ୍ର, ସକଳ କୁଟୁମ୍ବରେ ମୁଁ ଅଧିକାରୀ। କିନ୍ତୁ ତାଙ୍କ ପରି ମୋର ମନ କଥା କିଏ ବା ବୁଝିବ। ଜଣକ ବିନା ମୋତେ ସବୁ ଅନ୍ଧାର। ସେଥିରେ ଅମାୟିକ ବ୍ୟକ୍ତି। ମନସ୍ୱଚ୍ଛ, ଶାନ୍ତ, ଶିଷ୍ଟ, ସରଳ। ବର୍ତ୍ତମାନ ନିଃସଙ୍ଗ ଜୀବନ ନେଇ ଚାଲିଛି ତାଙ୍କରି କାମରେ। ସେ ଯେଉଁ ଓଡ଼ିଆ ସଂସ୍କୃତି ପରିଷଦକୁ ମୋ ଉପରେ ଦାୟିତ୍ୱ ଦେଇ ଯାଇଛନ୍ତି ସେ ଦାୟିତ୍ୱ ମୁଁ ସାଧ୍ୟ ମୁତାବକ ବହନ କରୁଛି ତାଙ୍କ ଛାତ୍ର ଓ ମୋର ପିଲାମାନଙ୍କ ସହଯୋଗରେ। ମୁଁ ବିଭା ହେବାପରଠାରୁ ସେ ଯିବା ପର୍ଯ୍ୟନ୍ତ ଯେତେ ଦୁଃଖ ସୁଖ ଝଡ଼ଝଞ୍ଜା ସ୍ନେହଶ୍ରଦ୍ଧାରେ ଅତିବାହିତ କରିଛି। ସେ ଅଭୁଲା ସ୍ମୃତିଟି ମୁଁ ଲେଖି ପ୍ରକାଶିତ କଲି। ଏ ବହିରେ ମୋର ଯୋଇଁ ଡ. ଶରତ ଚନ୍ଦ୍ର ଶତପଥି ଏବଂ ମୋର ଭଉଣୀ ସ୍ନେହଲତା ମହାପାତ୍ର ସାହାଯ୍ୟ କରିଥିବାରୁ ମୁଁ କୃତଜ୍ଞ ଏବଂ ବଡ଼ ଝିଅ ବୁଲୁ ନିକଟରେ କୃତଜ୍ଞ।

ମୋର ପରିବାରର ୪ଟି ଝିଅ - ୪ ଯୋଇଁ - ୩ ପୁଅ ଓ ୩ ବୋହୂ ଏବଂ ନାତି ନାତୁଣୀଙ୍କ ପାଇଁ ସେହି ଅମର ଆତ୍ମାଙ୍କ ଚରଣ ତଳେ ବିନମ୍ର ପ୍ରଣାମ ସହ - ଆଶୀର୍ବାଦ ଭିକ୍ଷା କରୁଛି।

ଆଜି ସ୍ୱାମୀ ଡଃ କାହ୍ନୁଚରଣ ମିଶ୍ରଙ୍କ ଷଷ୍ଠ ବାର୍ଷିକୀ ସ୍ମୃତି ଉଦ୍ଦେଶ୍ୟରେ ଏହି 'ଅଭୁଲା ସ୍ମୃତି' ସଂକଳଟିକୁ ତାଙ୍କରି ଚରଣତଳେ ଅର୍ପଣ କରୁଛି।

— ପ୍ରିୟମ୍ବଦା

Digitized by PPRACHIN, SOA

# ଅଭୁଲା ସ୍ମୃତି

ଭିଜା ଅତୀତର ଅନେକ ସ୍ମୃତି ଆଜି ମୋର ମନେ ପଡୁଛି । ସମୟର ସ୍ରୋତରେ ମୋର ସୁଖ ଦୁଃଖର ସଂସାର କେତେ ଶୀଘ୍ର ଭାଙ୍ଗିଗଲା - ମୁଁ ଖୁଅଧରି ପାଇଲି ନାହିଁ । ଦୀର୍ଘ ୬୦ ବର୍ଷ ଧରି ଯାହାଙ୍କ ହାତ ଧରି ସ୍ୱାମୀ ରୂପେ ପାଇଥିଲି - ସେ ଆଜିଆଉ ନାହାନ୍ତି । ଏକାକିନୀ ନିଃସଙ୍ଗ ଜୀବନ ମୋର ଅତୀତରେ ସ୍ମୃତିଗୁଡ଼ିକୁ ଧରି ସାଉଁଟାଇ ଲାଗିଛି ।

ମୋ ସ୍ୱାମୀ ପ୍ରଫେସର ଡ: କାହ୍ନୁଚରଣ ମିଶ୍ର ଥିଲେ ଜଣେ ବିଶିଷ୍ଟ ସାହିତ୍ୟିକ, ଗବେଷକ, ଲେଖକ, ବକ୍ତା ଓ ବନ୍ଧୁବତ୍ସଳ । ଜଗନ୍ନାଥଙ୍କ ଧର୍ମ ଉପରେ ଥେସିସ - ଲେଖି ସେ ବହୁ ସୁନାମ ଅର୍ଜନ କରିଥିଲେ । ସେ ଭାରି ସ୍ନେହୀ ଓ ପରୋପକାରୀ ଥିଲେ । ତିନି ପୁଅ ବୋହୂ, ୪ ଝିଅ - ଯୋଇଁ ଓ ନାତି ନାତୁଣୀଙ୍କୁ ନେଇ ମୋର ସଂସାର ଥିଲା ସୁନ୍ଦର ଓ ମଧୁମୟ । ଶୁଆ ସାରି ପରି ଆମେ ଦୁହେଁ - ଏକାଠି କେତୋଟି ବସନ୍ତ ଅତିକ୍ରମ କରିଗଲୁ ।

ଦିନେ ହଠାତ୍ କାହ୍ନୁଚରଣ ଅସୁସ୍ଥ ହୋଇ ପଡ଼ିଲେ । କିଭଳି ଏକ ଅଜଣା ରୋଗ ଆକ୍ରମଣ କଲା - କିଏ ଚିହ୍ନି ପାରିଲେ ନାହିଁ । ବଡ଼ପୁଅ ବଡ଼ଝିଅ ତାଙ୍କୁ କଳିଙ୍ଗ ହସ୍‌ପିଟାଲ୍‌ରେ ଆଡ଼ମିସନ୍ କରିଦେଲେ । କେତେ ଔଷଧ, ଇଂଜେକ୍‌ସନ୍ ଦିଆହେଲା - ପିଲାମାନେ, ପୁତୁରା ମୋ ଭାଇ ସମସ୍ତେ କେତେ ସେବା କଲେ । ମୁଁ ଜଗନ୍ନାଥଙ୍କୁ ଡାକୁଥାଏ - ପ୍ରଭୁ ! କାହ୍ନୁଚରଣଙ୍କୁ ଆରୋଗ୍ୟ କରିଦିଅ । କେତେ ଦୀପ ଜାଳିଲି ତାଙ୍କ ନା'ରେ ସବୁ ବୃଥା ହେଲା ୫.୧୨.୨୦୦୧ରେ ବଡ଼ ପୁଅ ବୁଢ଼ା ଡାକ୍ତରଖାନାରୁ ଖବର ଦେଲା ନନା ଆଉ ନାହାନ୍ତି ।

ଆକାଶ ଛିଣ୍ଡି ପଡ଼ିଲା ଭଳି ଲାଗିଲା । ବହୁତ କାନ୍ଦିଲି - ପୁଅ, ବୋହୂ, ଝିଅ-ଯୋଇଁ ସମସ୍ତେ କେତେ ବୁଝାଇଲେ । ଅନିତ୍ୟ ସଂସାର । କେହି କାହାର ନୁହନ୍ତି । ସେ ଏକା ଆସିଥିଲେ - ଏକା ଚାଲି ଗଲେ । ତାଙ୍କର ସମସ୍ତ ସ୍ମୃତି ଛାଡ଼ିଦେଇ ଗଲେ । ଘରେ ବାହାରେ ସବୁଆଡ଼େ ତାଙ୍କରି ମୁହଁ ଦେଖାଗଲା ଆଖିରୁ ଖାଲି ଲୁହ ପୋଛି ଜଗନ୍ନାଥଙ୍କୁ ଧ୍ୟାନ କଲି ।

x x x



Digitized by PPRACHIN, SOA

ସେଦିନ ଥିଲା ଚଇତର ଏକ ମଧୁର ସନ୍ଧ୍ୟା । ଚନ୍ଦ୍ରକିରଣ ବିଞ୍ଚି ହୋଇ ପଡୁଥିଲା ଛାତ ଉପରେ । ଖଣ୍ଡିଏ ପଟି ପକାଇ ମୁଁ ବସି ଦେଖୁଥିଲି ଖୋଲା ଆକାଶକୁ । ଛାତ ଉପରେ ଅସଂଖ୍ୟ ଫୁଲ କୁଣ୍ଡରେ ଫୁଲ ଫୁଟି ଚନ୍ଦ୍ରକିରଣରେ ବହୁତ ସୁନ୍ଦର ଦେଖା ଯାଉଥିଲା । ଫୁଲ ଗଛଗୁଡ଼ିକୁ କାହ୍ନୁଚରଣ ଲଗାଇଥିଲେ । ଅତୀତର ସମସ୍ତ ସ୍ମୃତି ମୋର ଆଖି ଆଗରେ ଭାସି ଆସିଲା । ମୁଁ ଥିଲି ଭେଡ଼ା ଜମିଦାର ଘରର ଏକମାତ୍ର ଅଳିଅଳୀ ଝିଅ । ମୋର ବୟସ ବଢ଼ିବା ସଙ୍ଗେ ସଙ୍ଗେ ବିବାହ ପାଇଁ ବାପା ଜମିଦାର ନିଳାଦ୍ରୀ ମିଶ୍ର ଭାରି ବ୍ୟସ୍ତ ହୋଇ ପଡ଼ିଲେ ।

କାହ୍ନୁଚରଣ ଜନ୍ମ ଗ୍ରହଣ କରିଥିଲେ, ୧.୧.୧୯୨୨ କେନ୍ଦ୍ରାପଡ଼ା ପଚ୍ଚାମୁଣ୍ଡାଇର ବକ୍ତାରପୁର ଗ୍ରାମରେ । ସେତେବେଳେ ସେ କଲିକତାରେ ଏମ୍.ଏ ପଢୁଥିଲେ । ନନା ତାଙ୍କୁ ଯୋଇଁ ରୂପେ ବାଛି ମୋ ସହିତ ବିବାହ ଦେବା ପାଇଁ ସ୍ଥିର କଲେ ।

କାଲି ଭଳି ଲାଗୁଛି– ମୋର ବାହାଘର କଥା । କାହ୍ନୁଚରଣ ବରବେଶରେ ଆସିଥାନ୍ତି – କେତେ ବାଜା, ଶଙ୍ଖ ବାଜୁଥାଏ । ମୋର ବିଭାଘର ଦିନ ଘରେ ବାହାରେ ଖୁବ୍ ସଜ୍ଜାସଜ୍ଜି ହୋଇଥାଏ । ବାଜାରେ ଦାଣ୍ଡ କମ୍ପୁଥାଏ । ସେତେବେଳେ ଗାଁକୁ ମଟର ଗାଡ଼ିର ସୁବିଧା ନଥାଏ । କାରଣ ମଫସଲ ଗାଁ କେନାଲ ବନ୍ଧ ରାସ୍ତା । ପାଲିଙ୍କି ସବାରି ବଳଦ ଗାଡ଼ି ଗଲା । ଗୋପିନାଥପୁର ତ୍ରିବେଣୀଶ୍ୱର ଠାକୁରଙ୍କ ପାଖକୁ ପୂଜା ଗଲା । ଯୋଇଁକୁ ରୋଷଣୀ ଆଣିବା ପାଇଁ – ଘରେ ବନ୍ଧୁବାନ୍ଧବ ଭର୍ତ୍ତି । ପିଉସା ପିଇସିନାନୀ ତାଙ୍କ ପୁଅ, ବୋହୂ, ଝିଅ, ଯୋଇଁ କେତେ ଲୋକ ଆସିଥାନ୍ତି । ବାପା ଭଣଜା ଭାଣିଜିମାନଙ୍କୁ ବହୁତ ଭଲ ପାଆନ୍ତି । ପ୍ରାୟ ସମସ୍ତେ ଆସିଥାନ୍ତି – କୁଣିଆ ମଇତ୍ରରେ ଘର ପୁରି ଉଠିଥାଏ ।

କାହ୍ନୁଚରଣ ଖଦଡ଼ ପିନ୍ଧନ୍ତି । ରଙ୍ଗ ବେରଙ୍ଗ ନୁହେଁ ପୁରା ଧଳାବସ୍ତ୍ର । ବଳଦ ଗାଡ଼ି ଯାଇଥାଏ ବରଯାତ୍ରିଙ୍କୁ ଆଣିବା ପାଇଁ । ପ୍ରାୟ ପଚାଶ ବରଯାତ୍ରୀ ଆସିଥାଆନ୍ତି । କିନ୍ତୁ କାହ୍ନୁଚରଣ କହିଲେ ମୁଁ ମଣିଷଙ୍କ କାନ୍ଧରେ ବସିଯିବି ନାହିଁ । ଅସୁନ୍ଦର କଥା ମୁଁ ଚାଲିକରି ଯିବି । ଯିଏ ଯେତେ ବୁଝାଇଲେ ସେ ଶୁଣିଲେ ନାହିଁ । ଶେଷରେ ସମସ୍ତେ ଚାଲିକରି ଗଲେ ।

ଗାଁରେ ସମସ୍ତେ କହିଲେ ନୀଳବାବୁ ଯୋଇଁ କରିଛନ୍ତି ଏତେସୁନ୍ଦର ଆଉ କେତେ ଯୋଗ୍ୟର ।



Digitized by PPRACHIN, SOA

ଏତେ ଆନନ୍ଦ ଭିତରେ କିନ୍ତୁ କାହ୍ନୁ ଚରଣଙ୍କର ମନ ଉଣା ଲାଗୁଥାଏ। ସେ ଯେତେବେଳେ ଆସିଲେ ତାଙ୍କର ଜଣେ ସାଙ୍ଗ କହିଲା ସେଠି କାହିଁକି ବାହାହେଲୁ। ଝିଅ କାଳୀ ଅସୁନ୍ଦରି। ଏକଥା ଶୁଣି କାହ୍ନୁଚରଣ ବିଶ୍ୱାସ କରି ପାରିଲେ ନାହିଁ। କକେଇ ତାଙ୍କର ଠିକ୍ କରିଛନ୍ତି ଦେଖିକରି।

ଦଦେଇ ପୁଅ ଭାଇ ଏ କଥା ଶୁଣି ଥା'ନ୍ତି। ସେ ଆସି ମୋ ଭାଇନାଙ୍କ ଆଗରେ କହିଦେଲା। ଭାଇନା ଶୁଣି କହିଲେ, ଆମେ ଆଗ ଝିଅକୁ ଦେଖାଇବୁ ତା'ପରେ ବାହାଘର ହେବ।

ତା' ଆର ଦିନ ବରଯାତ୍ରୀ ସବୁ ଗଲେ। କାହ୍ନୁଚରଣ ସପ୍ତମଙ୍ଗଳା ପର୍ଯ୍ୟନ୍ତ ରହିଲେ। ଅଷ୍ଟମଙ୍ଗଳା ଦିନ ଝିଅ ଯୋଇଁ ବିଦାହେବେ। ମନ କାହାରି ଭଲ ନଥାଏ। ଜେଜେ ମା' ଭାରି ଜିଦିଆ। ସେ ସବୁ କଥା ଶୁଣି ରାଗିଗଲେ।

ମୋର ଜେଜେପା ଚୌଧୁରୀ ରାଧାନାଥ ମିଶ୍ରଙ୍କ ଘରେ କାହ୍ନୁଚରଣ ରହୁଥାନ୍ତି। ଜେଜେ ମା' କାହାକୁ କିଛି ନ କରି ଉପରବାଟେ ମୋତେ ନେଇ ରାତିରେ ଯୋଇଁକୁ ଦେଖାଇ ଦେଲେ କନ୍ୟା ଦେଖା। ଏହାପରେ ସବୁ ଗୋଳମାଳ ତୁଟିଗଲା। ଠିକ୍ ସମୟରେ ବାପା ଝିଅ ଯୋଇଁକୁ ବିଦା କଲେ।

ଝିଅକୁ ପଠାଇବାବେଳେ ସେ କାନ୍ଦି ଗଡୁଥାନ୍ତି। କାରଣ ନଅଟା ପୁଅଝିଅ ମରିଗଲେ ପୁଣି ପୁଅଟିଏ ହୋଇଥାଏ। ସେ ଛୁଆ ଦଶମାସର। ସ୍ତ୍ରୀ ତାଙ୍କର ରୋଗଣା। ଝିଅଟି ତା' ଟିକି ଭାଇର ସବୁ କରୁଥାଏ।

ଆଜି ଝିଅ ଶାଶୁଘରକୁ ଚାଲିଯିବ, ମନକୁ ବୁଝାଇ ଧୈର୍ଯ୍ୟଧରି ରହିଲେ। ଘରଛାଡ଼ି ଆସିଲା ବେଳକୁ ମୁଁ କାନ୍ଦି ଗଡୁଥାଏ ମୋ କୁନି ଭାଇଟି ପାଇଁ।

ଏତେ ବର୍ଷ ପରେ କେତେକଥା ମନେ ପଡ଼େ ଏ ଅଭୁଲା ସ୍ମୃତି। ଜେଜେ ବାପା ମୋର ଜମିଦାର ଘର ପୁଅ। ଭଲମନ୍ଦ ହେଲେ ଭଣ୍ଡାରି ପଠାଯାଏ ଝିଅର ଶାଶୁ ଘରକୁ ଖବର ବୁଝିବାକୁ, ଭଲମନ୍ଦ ବାରତା ଦବାଲାଗି। ବାଞ୍ଛା ବୋଲି ଭଣ୍ଡାରିଟିଏ ଥାଏ। କାଳିଆ ପତଳା ହୋଇ ଡେଙ୍ଗା ଲୋକ। ଭାରି ଭଲ ଲୋକ। ସେଇ ଆମର ଥିଲା ବିଶ୍ୱସ୍ତ ଦୂତ।



Digitized by PPRACHIN, SOA

ସେତେବେଳେ ମୋ ଶାଶୁଘର ପଣ୍ଡିତ ଘର ବୋଲି ଡାକଥିଲା। ମାତ୍ର ପରବର୍ତ୍ତୀ କାଳ ଆଗକାଳିଆ ମାଟିଘର । ଛପର ଚାଳଘର। ଦୁଇ ପଟେ ଦୁଇ ଖଞ୍ଜା ଘର କିନ୍ତୁ ସେଥିପାଇଁ ମୋତେ ଚଳିବାକୁ ବହୁତ ଅସୁବିଧା ହୁଏ। ପିଲାଟି ଦିନରୁ ଆମେ ଚଳି ଆସିଥିଲୁ ଅନ୍ୟ ପ୍ରକାରରେ। ପକା ଘର ଦୋତଲା କୋଠା। ବୋଲହାକ କରିବାକୁ ଗଣ୍ଡା ଗଣ୍ଡା ଚାକର।

କିନ୍ତୁ ଶାଶୁଘରକୁ ଗଲାବେଳକୁ ବାପା ମୋତେ ବୁଝାଇ ଦେଇଥିଲେ ମା'ରେ ଶାଶୁଘର ଅଲଗା, ବାପଘର ଅଲଗା। ତୁ ସବୁ କାମ କରି ଗୁରୁଜନମାନଙ୍କୁ ସେବା କରି ସ୍ନେହଶ୍ରଦ୍ଧା କରିବୁ । ତୋ ନିନ୍ଦା ଯେପରି ମୁଁ ନ ଶୁଣେ। ଆଜି ପର୍ଯ୍ୟନ୍ତ ବାପାଙ୍କ କଥା ମାନି ଆସିଛି।·

ମୁଁ ପ୍ରତ୍ୟେକ ବର୍ଷ ଦୋଳକୁ ଆସେ ବାପଘରକୁ। ମୋତେ ବାପା ନେଇ ଆସନ୍ତି। ବାପଘରେ ମାସେ ଖଣ୍ଡେ ରହି ରଜ ବେଳକୁ ଶାଶୁ ଘରକୁ ଯାଏ। ସେହି ସମୟରେ ବାପା ବାଆଙ୍କୁ ପଠାନ୍ତି ଝିଅକୁ ଦେଖି ଆସିବାକୁ।

ମୋର ମାଟିରେ ଚାଲିବାର ଅଭ୍ୟାସ ନଥାଏ। କେତେବେଳେ ଗୋଡ଼ ଖସିଯାଏ ପଡ଼ିଯାଏ ମୁଁ। ବାଆ ଏହା ଦେଖି ମନଦୁଃଖ କରେ। ସେ ଗଲାବେଳକୁ ମୋତେ ପଚାରେ ନାନୀ ସାଆନ୍ତଙ୍କୁ କଣ କହିବି। ତୁମେ ନାନୀ ଏତେ କାମ କରୁଛ ମୁଁ ସହିପାରୁନି ?

ମୁଁ ହସି ହସି କହେ, କହିବୁ ନାନୀ ଭଲରେ ଅଛି। କିଛି ଅସୁବିଧା ନାହିଁ। କିନ୍ତୁ ବାଆର ମନ ବୁଝେନି ସେ ତା ବାପ ଅମଳରୁ ଦେଖିଛି ଜମିଦାର ଘରର ସୁଖ ଚଳନି। ସେ ନାନୀଙ୍କ କଥା ଶୁଣି, ଆଖିରୁ ଲୁହ ପୋଛି ପକାଏ ଲୁଗାକାନିରେ।

ପ୍ରତ୍ୟେକ ବର୍ଷ ମୁଁ ଯାଏ ଦୋଳଯାତ୍ରାକୁ ବାପଘରକୁ। ବାପା, ବୋଉ ଗଲାପରେ ଇଚ୍ଛା ହୁଏନି ଯିବାକୁ। ଭାଇମାନେ ଜବରଦସ୍ତି ଆମ ଦୁଇଜଣଙ୍କୁ ନେଇ କରି ଯାଆନ୍ତି ଦୋଳକୁ।

କାହ୍ନୁଚରଣଙ୍କୁ ଦୋଳଯାତ୍ରା ଦେଖିବାକୁ ବହୁତ ଭଲ ଲାଗେ। ଜମିଦାର ଘରର ବନ୍ଧୁବାନ୍ଧବ ଝିଅ ଯୋଇଁ ସମସ୍ତେ ଆସନ୍ତି ଦୋଳକୁ ଗାଁକୁ।



Digitized by PPRACHIN, SOA

ମୋର ତିନି ଭାଇ, ବଡ଼ଭାଇ ହରପ୍ରସନ୍ନ ମିଶ୍ର ଇଞ୍ଜିନିଅର୍। ମଝିଆ ଭାଇ ଦୁର୍ଗାପ୍ରସନ୍ନ ମିଶ୍ର ଇଞ୍ଜିନିଅର। ବଡ଼ କମ୍ପାନୀରେ କାମ କରେ ସାନ ଭାଇ ଗୌର ପ୍ରସନ୍ନ ମିଶ୍ର, ଆନ୍ଧ୍ରବ୍ୟାଙ୍କର ଡିଭିଜନ୍ ମ୍ୟାନେଜର । ଭାଇ ଭାଉଜ ବହୁତ ଭଲ। ବାପା, ବୋଉ ଗଲେବି ତାଙ୍କ ସ୍ନେହ ଶ୍ରଦ୍ଧା ବହୁତ। ଭିଣେଇ ଗଲାପରେ ତାଙ୍କ ମନ ମୋ ପାଇଁ ଦୁଃଖରେ ଅଭିଭୂତ ହୋଇ ପଡ଼େ। ମୋର ଦେହ ଅସୁବିଧା ହେଲେ ସମସ୍ତେ ଧାଇଁ ଆସିବେ ମୋ ପାଖକୁ।

ବାଈାବି ସେପାରିକି ଚାଲିଗଲାଣି। ତା'ର ପୁଅମାନେ ଆସନ୍ତି ତାଙ୍କୁ ଦେଖିଲେ ବାଈାକଥା ବହୁତ ମନେପଡ଼େ।

+ + +

ଅତୀତର କଥା, ବାପଘରଠାରୁ ଶାଶୁଘର ପର୍ଯ୍ୟନ୍ତ ସବୁକଥା ବହୁତ ମନେପଡ଼େ। ବହୁବାର ମାମୁଁ ଘରକଥା ମନେପଡ଼େ ?

ମୋର ଅଜାଥିଲେ ସପନି ମିଶ୍ରେ। ପଟିଆ ରାଜାଙ୍କ ଦେଓ୍ୱାନ୍। ପିଲାଦିନେ ମୁଁ ଏବଂ ମୋର ବଡ଼ଭାଇନା ବହୁତ ଥର ଯାଇଛୁ ମାମୁଁ ଘରକୁ। ହାତୀରେ ବସିଛୁ। ଆମର ସବୁ ଅର୍ଦ୍ଦଳି ଅଜା, ଆଈ, ମାମୁଁ, ମାଇଁଙ୍କ ପାଖରେ। ମୋ ବାହାଘରକୁ ସାନମାମୁଁ ବୈଦ୍ୟନାଥ ରଥ ଯାଇଥିଲେ ଆମ ଘରକୁ। ସାତ, ଆଠଦିନ ରହିଥିଲେ। ବହୁତ ଉପହାର ମୋତେ ଦେଇଥିଲେ।

ବାହାଘର ବର୍ଷକ ପରେ ମୋର ଝିଅଟିଏ ହେଲା ବାପଘରେ। ସେତେବେଳେ କାହ୍ନୁଚରଣ ପାରଳାଖେମୁଣ୍ଡି କଲେଜରେ ଅଧ୍ୟାପକ ଥିଲେ। ବଡ଼ ଝିଅର ନାଁ ବୁଲୁ। ମୁଁ ଝିଅକୁ ନେଇ ଯାଇଥାଏ ପାରଳାଖେମୁଣ୍ଡି। ବାପା ନେଇକରି ଯାଉଥାନ୍ତି। ସାନମାମୁଁ କଟକ ଷ୍ଟେସନରେ ଅପେକ୍ଷା କରିଥାନ୍ତି। ମାମୁଁଙ୍କୁ ଦେଖି ମୋତେ ଖୁସି ଲାଗିଲା। ମାମୁଁଙ୍କୁ ମୁଣ୍ଡିଆ ମାରି କାନ୍ଦି ପକାଇଲି। କେତେ ସ୍ନେହ ଥିଲା ସେ ସମୟରେ। ମାମୁଁ ମୋ ପାଇଁ ଆଣିଥିବା ଲୁଗାପଟା ଝିଅ ପାଇଁ ଆଣିଥିବା ସୁନାଚେନ୍ ସବୁଦେଲେ ମୋତେ। ପାରଳା ଖେମୁଣ୍ଡିରେ ଦଶବର୍ଷ ରହିଲୁ। ତା' ଭିତରେ ମୋର ଆଉ ଗୋଟିଏ ଝିଅ ହେଲା ତା'ପରେ ପୁଅଟି ହେଲା। ପୁଅକୁ ବର୍ଷେ ହୋଇଥାଏ ଟ୍ରାନ୍ସଫର ହେଲା ପୁରୀ । ପୁରୀରେ ବହୁ ଆନନ୍ଦରେ ଆମେ ସବୁ ରହିଲୁ। ଜଗନ୍ନାଥଙ୍କୁ ପ୍ରତି ସପ୍ତାହରେ ମୁଁ ଦେଖିବାକୁ



Digitized by PPRACHIN, SOA

ଯାଏ। ସେଠାରେ ଆଠବର୍ଷ ରହିବା ପରେ ଟ୍ରାନ୍ସଫର ହେଲା କଟକ। ସେତେବେଳେ ମୋର ଦୁଇଟି ପୁଅ ଓ ଦୁଇଟି ଝିଅ ହୋଇଥାଏ। ମୁଁ ପିଲାଙ୍କୁ ଧରି କଟକରେ ମୋ ପିଉସି ନାନୀ ଘରେ ରହିଲି। କାହ୍ନୁଚରଣ ରହିଲେ ତାଙ୍କ ପିଇସି ନାନୀ ଘରେ। ମୋ ବଡ଼ ମାମୁଁ ଉଦୟନାଥ ମିଶ୍ର ସେତେବେଳେ ଏକ୍‌ଜୁକିଟିଭ୍ ଇଞ୍ଜିନିଅର ଥାଅନ୍ତି କଟକରେ। ସେ ମହମଦିଆ ବଜାରରେ ଘର କରି ରହିଥାନ୍ତି।

ସେ ଦିନେ ହଠାତ୍ ଆସି ପହଞ୍ଚିଲେ ସୁତାହାଟରେ - ପିଇସି ନାନୀ ଘରେ। ମୁଁ ମାମୁଁକୁ ଦେଖି ମୁଣ୍ଡିଆ ମାରିଲି। ମାମୁଁ କହିଲେ ପିଲାଙ୍କୁ ନେଇ ଚାଲେ ଆମ ଘରକୁ ମାଇଁ ମୋତେ ପଠାଇଛି ତୋତେ ନେବା ପାଇଁ।

ମୋର ଇଚ୍ଛା ନଥାଏ ଯିବାକୁ କାରଣ । ମାମୁଁ ଭାରି ରାଗି। ତାଙ୍କ ସାମନାରେ ଆମକୁ ଠିଆ ହବାକୁ ଡର ଲାଗେ। ମାମୁଁ ଜାଣି ପାରିଲେ ମୁଁ ଯିବାକୁ ଚାହୁଁନି। କହିଲେ ମୋ ଝିଅ ହୋଇଥିଲେ ତୁ ଯାଇନଥାନ୍ତୁ। ମୁଁ ବାଧ ହୋଇ ମାମୁଁଙ୍କ ସାଙ୍ଗରେ ଗଲି। ପିଲାଙ୍କୁ ଧରି ମାମୁଁ ଘରେ ରହିଲି। ଜିନିଷ ପତ୍ର ରହିଲା ଥୋରିଆ ସାହି ମାୟାଧର ମାନସିଂହଙ୍କ ଘରେ। ପୁରା ତିନିମାସ ପରେ ପିଲାଙ୍କୁ ଆଣି ଆମେ ଥୋରିଆ ସାହିରେ ମାୟାଧର ମାନସିଂହଙ୍କ ଘରେ ରହିଲୁ। ଦୁଇ ତିନି ବର୍ଷ ପରେ ରେଭେନ୍ସାରେ କ୍ୱାଟର ମିଳିଲା। ଆମେ ଆସିଲୁ କ୍ୱାଟରକୁ। ସାନ ମାମୁଁ ମଝିରେ ମଝିରେ ଚାଉଳ ପଠାନ୍ତି। ବଡ଼ମାମୁଁ ମଝିରେ ମଝିରେ ଆସନ୍ତି ଦେଖିବାକୁ । ଥରେ ମାମୁଁଙ୍କୁ କହିଲି ମାମୁଁ ମୋତେ ଜାଗାଖଣ୍ଡେ କରିଦେବ। ମାମୁଁ ହସି ହସି ଗଡ଼ିଗଲେ କହିଲେ ମା'ରେ ମାମୁଁଘର ଲୋଭ ଆହୁରି ଯାଇନି ?

ମୁଁ ସାହସ କରି କହିଲି ଜାଗାଖଣ୍ଡେ ହେଲେ ଘର ଖଣ୍ଡେ କରି ପିଲାଙ୍କୁ ଧରି ରହିବି ? ବଡ଼ମାମୁଁ ମୋ ନାଁରେ ଉତ୍କଳ ୟୁନିଭରସିଟ୍ ପାଖରେ ଏକରେ ଜାଗା କରାଇଦେଲେ। କହିଲେ ବୁଢ଼ୀଲୋ ମୁଁ ଚାରିଟା ପ୍ଲଟ କରିଦେଲି। ପିଲାମାନଙ୍କର ଗୋଟେ ଗୋଟେ ତୋର କାହ୍ନୁର ଗୋଟେ । ପିଲାଙ୍କ ପାଖରେ ରହିବୁନି ?

ତା ପରେ ପରେ ଅଜା, ଆଈ, ମାମୁଁ, ମାଇଁ ସବୁ ଚାଲିଗଲେ। ସାନମାଇଁ ସେ ମଧ ଗଲେ। କେବଳ ସାନମାମୁଁ ଅଛନ୍ତି। ସାନମାମୁଁ ଭଣଜା ଭାଣିଜିଙ୍କୁ



Digitized by PPRACHIN, SOA

ବହୁତ ଭଲ ପାଆନ୍ତି । ଭାଣିଜିଯୋଇଁ ଗଲାପରେ ମାମୁଁଙ୍କ ଆଖିକି ଦେଖାଯାଉନି । ବୁଡୁ ନଥିଲା ବେଳେ ତା' ଗାଡ଼ି ନେଇ ଆସି ପହଞ୍ଚିବେ ଅଣ୍ଡାଳି ଅଣ୍ଡାଳି ମୋ ପାଖରେ । ମିଠା ନେଇ କରି ଆସିଥିବେ ପିଲାଙ୍କ ପାଇଁ ।

ମୁଁ ମାମୁଁଙ୍କୁ ଦେଖି କାନ୍ଦି ପକାଇଲି ତାଙ୍କ କୋଳରେ ମୁଣ୍ଡ ରଖି । ମୋ କାନ୍ଦିବା ଦେଖି ମାମୁଁ କାନ୍ଦି ପକାଇ କହିଲେ ମା'ରେ ରାଧୁ, କାହ୍ନୁଗଲେ ମୁଁ ବଞ୍ଚିଛି ।

ପଚସ୍ତରି ବର୍ଷ ଟପିଲା ପରେ ଆଜିବି ଜୀବନରେ ସେଦିନର କଥା ସବୁ ମନେପଡ଼େ । ମାମୁଁଙ୍କ ପାଖକୁ ମୁଁ ଗଲେ ଭାଣିଜି ଆସିଛି ବୋଲି ତାଙ୍କୁ କୋଟିନିଧି ଭଳି ଲାଗେ । କେତେକଥା ଗପିବେ । ଭଣଜା ଭାଣିଜି ତାଙ୍କ ଝିଅ ଯୋଇଁ ପୁଅ ବୋହୁ ସମସ୍ତେ ଯାଆନ୍ତି ମାମୁଁ ଅଜାଙ୍କ ପାଖକୁ । ମାମୁଁ ବହୁତ ଖୁସି ହୋଇଯାନ୍ତି ସମସ୍ତଙ୍କୁ ଦେଖିଲେ । ଆଜି କାଲି ସେ ସ୍ନେହଶ୍ରଦ୍ଧା ନାହିଁ । ଏ ଅଭୁଲା ସ୍ମୃତି ଯିବନି ମନରୁ ।

+ + +

ପଛକଥା ମୋର ସବୁବେଳେ ମନେ ପଡୁଛି । ମୁଁ ବିଭାହେବା ବେଳକୁ ମୋତେ ଷୋହଳ ବୟସ ପୁରି ଥିଲାକି ନାହିଁ । ବହୁତ ଗେହ୍ଲାରେ ଆମ ଘରେ ବଢ଼ିଥିଲି । ଶାଶୁଘର ଥିଲା ବହୁକୁଟୁମ୍ବି ପରିବାର । ସେଥିପାଇଁ ମୋର ବାପା ନିଳାଦ୍ରିନାଥଙ୍କ ମନରେ ବହୁତ ଚିନ୍ତାଥାଏ । କେବଳ ଯୋଇଁଙ୍କୁ ଦେଖିଲେ, ତାଙ୍କ ମନ ଆନନ୍ଦ ହୋଇଉଠେ । ସେ ଝିଅକୁ ସୁନ୍ଦର ଯୋଇଁ ଯୋଗ୍ୟପାତ୍ର ଦେଖି ଦେଇଛନ୍ତି ଚିନ୍ତା କ'ଣ ?

କାହ୍ନୁଚରଣ ବିଭା ହେଲା ବେଳକୁ ପାରଳାଖେମୁଣ୍ଡି କଲେଜରେ ଓଡ଼ିଆ ଅଧ୍ୟାପକ ଥିଲେ । ସେତେବେଳେ ସେ କଲେଜ ଘରୋଇ ପରିଚାଳନାରେ ଚଳୁଥିଲା । ବିଭାଘରର କିଛିଦିନ ପରେ ମୁଁ ସ୍ୱାମୀଙ୍କ ସାଙ୍ଗରେ ଆସିଲି ଚାକିରୀ ଜାଗାକୁ ।

ପ୍ରଥମ ଝିଅ ଜନ୍ମବେଳକୁ ମୁଁ ବାପଘରକୁ ଆସିଲି । ନାତୁଣୀର ଏକୋଇଶିଆ ବାପା ମୋର ବଡ଼ ଯାକଜମକରେ କଲେ । ଝିଅର ଶାଶୁଘର କେହି ନ ଆସିବାରୁ ତାଙ୍କର ମନ ଦୁଃଖ ହୋଇଗଲା । ନାତୁଣୀ ବହୁତ ସୁନ୍ଦର ହୋଇଥିବାରୁ ତା ନାଁ ଦେଲେ ଜ୍ୟୋତିର୍ମୟୀ ।



Digitized by PPRACHIN, SOA

ବାପଘରେ ମୋତେ ବେଶ୍ କିଛିଦିନ ରହିବାକୁ ପଡ଼ିଲା ଦେହ ଖରାପ ପାଇଁ।

ଝିଅକୁ ଆଠ ନଅ ମାସ ହୋଇଥାଏ, କାହ୍ନୁଚରଣ ଆସିଲେ ଶ୍ୱଶୁର ଘରକୁ ଝିଅକୁ ଦେଖିବାକୁ।

ଜମିଦାର ଘର ଖାଇବା ପିଇବା ବଡ଼ ଧୁମ୍‌ଧାମ୍‌ରେ ଚାଲିଥାଏ। ଭିଣେଇ ଶରତ ଭାଇନା ମଧ୍ୟ ଆସିଥାନ୍ତି। ସେ ଆମ ଘରର ବଡ଼ ଯୋଇଁ? ଭିଣେଇ ଡାକ୍ତର। ସମସ୍ତେ ମିଶି ମହାବିନାୟକ ମନ୍ଦିର ଗଲେ। ମନ୍ଦିର ଜଲୌକା ପାହାଡ଼ ଉପରେ। ପାହାଡ଼ ଉପରକୁ ଚଢୁ ଚଢୁ କାହ୍ନୁଚରଣଙ୍କର ଗୋଡ଼ ଖସିଗଲା। ସେ ପଡ଼ିଗଲେ। ଘରେ ପହଞ୍ଚିଲା ପରେ ହାତଗୋଡ଼ ଆଉ ଚଳିଲା ନାହିଁ। ଡ. ଶରତ ବାବୁ ମୋ ଭିଣେଇ ମଧ୍ୟ ସାଙ୍ଗରେ ଯାଇଥାନ୍ତି। ସେ ଏ ଅବସ୍ଥା ଦେଖି କାହ୍ନୁଚରଣଙ୍କୁ ସାଙ୍ଗରେ ନେଇଗଲେ କଟକ। ବାପା ମଧ୍ୟ ସାଙ୍ଗରେ ଗଲେ। କାହ୍ନୁଚରଣ ଭିଣେଇଙ୍କ ପାଖରେ ରହି ତିନି ଚାରିମାସ ଚିକିତ୍ସା ହେଲେ।

କାହ୍ନୁଚରଣ ଟିକେ ଭଲ ହେବାରୁ ଚାକିରୀରେ ଯୋଗ ଦେଲେ। ମୁଁ ତାଙ୍କ ଦେହ ପାଇଁ ଭାରି ବ୍ୟସ୍ତହୁଏ ପାରଳାଖେମୁଣ୍ଡି ଯିବା ପାଇଁ। ବାପା ମୋତେ ବୁଝାନ୍ତି ତୁତ ରୋଗୀ ତୋତେ ଝିଅକୁ ସେଠାରେ କିଏ ଦେଖିବ।

କାହ୍ନୁଚରଣ ମାସେ କଲେଜରେ ଯୋଗ ଦେଇଛନ୍ତି କି ନାହିଁ ପାହାଡ଼ ଚଢୁ ଚଢୁ ଗୋଡ଼ ଖସିଗଲା ପଡ଼ିଗଲେ। ପୁଣି ଦେହ ବହୁତ ଖରାପ ହେଲା କ୍ରମେ କ୍ରମେ ପଇସା ପତ୍ରର ଅଭାବ ହୋଇଗଲା।

ଦୁଃଖ ଉପରେ ଅଭାବ ଅସୁବିଧା ମାଡ଼ି ଆସିଲା କାହ୍ନୁଚରଣଙ୍କ ଉପରେ। କାହ୍ନୁଚରଣଙ୍କ କକେଇ ଡାକ୍ତର କେଶବ ମିଶ୍ର। ସେ ପୁତୁରାକୁ ବହୁତ ଭଲ ପାନ୍ତି। ସେ ପୁତୁରାର ଦେହ ଖରାପ ଶୁଣି ସଙ୍ଗେ ସଙ୍ଗେ ପାରଳାଖେମୁଣ୍ଡି ଯାଇ ପୁତୁରାକୁ କଟକ ନେଇଆସିଲେ।

ଭିଣେଇ ଡ. ଶରତ ଚନ୍ଦ୍ର ମିଶ୍ର । ତାଙ୍କରି ପାଖରେ ରହି କାହ୍ନୁଚରଣଙ୍କ ଚିକିତ୍ସା ହେଲେ। ଭିଣେଇଙ୍କ ପାଖରେ ନଟିଆ ବୋଲି ପିଲାଟିଏ ଥିଲା ଆମ ଗାଁରେ। ଭିଣେଇଙ୍କ ପାଖରେ ଚାକିରୀ କରିଥିଲା। ସେ ଯାହା ସେବା କରିଛି କାହ୍ନୁଚରଣଙ୍କର ଭୁଲି ହବନି। ମୋତେ ମଧ୍ୟ ଆସିବାକୁ ପଡ଼ିଲା କଟକ ।



Digitized by PPRACHIN, SOA

ଦେହ ଖରାପ ପାଇଁ, ସେତେବେଳେ ଭଉଣୀର ଦେହ ଖରାପ ବହୁତ ହୋଇଥାଏ। ଭିଣେଇ ବହୁତ ଚେଷ୍ଟା କରି କାହ୍ନୁଚରଣଙ୍କୁ ଭଲ କଲେ। ମୋର ମଧ୍ୟ ଦେହ ଔଷଧ ପତ୍ର ଖାଇ ଭଲ ହେଲା।

କାହ୍ନୁଚରଣଙ୍କ ଦେହ ଭଲ ହେବାରୁ ମୋତେ ଓ ଝିଅକୁ ନେଇ ତାଙ୍କ ଗାଁକୁ ଗଲେ। ଗାଁରେ ତିନି ମାସ ଖଣ୍ଡେ ରହି ପାରଳାଖେମୁଣ୍ଡି କଲେଜରେ ଯୋଗଦେଲେ।

କେତେ ଦୁଃଖସୁଖ ଦିନ ମୋର ମନେ ପଡ଼େ ଆଜି। ଭିଣେଇ ଭଉଣୀ ଯାହା ମୋତେ ସାହାଯ୍ୟ କରିଛନ୍ତି ମୁଁ ଭୁଲିପାରିବିନି। ପିଲାଙ୍କ ଦେହ ଖରାପ ହେଲେ ମୁଁ ପଳାଇ ଆସେ ଶରତ ଭାଇନାଙ୍କ ପାଖକୁ? କେତେ ଦୁଃଖ ମୋ ଜୀବନରେ ଘଟିଛି କହିହେବନି ?

ଭାଇନାଙ୍କ କଥା ମନେପଡ଼ିଲେ ମୋ ଆଖିରୁ ଲୁହ ଗଡ଼ିପଡ଼େ। ବାପା ଝିଆରି ଓ ଝିଆରି ଯୋଇଁକୁ ବହୁତ ଭଲପାଆନ୍ତି। ମୋତେ ଯାହା ଦେବେ ବସିନାନୀ ଏ ପିଇସି ସଉଦି ନାନୀଙ୍କ ପାଇଁ ତାହା ଆଣିବେ।

ଯୋଇଁଙ୍କର ଅବସ୍ଥା ଦେଖି ବାପା ମୋତେ ବହୁତ ବୁଝାଇ କହିବେ, ମାରେ, ଯାହା ଦରକାର ମୋତେ କହିବୁ ? ମୋ ମୁହଁକୁ ଚାହିଁ ଲୁଗା କାନିରେ ଲୁହ ପୋଛି ପକାଇବେ ସାରାବର୍ଷ ଚାଉଳ ଡାଲି ଲୁଗାପଟା ମୋ ପାଇଁ ପିଲାଙ୍କ ପାଇଁ ବାପା ପଠାନ୍ତି ? ମୋର ଯେପରି କିଛି ଅସୁବିଧା ନହୁଏ।

+ + +

କାହ୍ନୁଚରଣ ତାଙ୍କ ଘର ପାଇଁ ବହୁତ କିଛି କରିଥିଲେ। ତାଙ୍କ ବାପା, କକେଇ ସମସ୍ତେ ଚାକିରୀ କରିଥିଲେ। କିନ୍ତୁ କ'ଣ ହେବ ବାପା ତାଙ୍କର ବହୁତ ଭଲ ପଣ୍ଡିତ ଲୋକ। ଟୋଲ୍‌ରେ ଚାକିରୀ କରିଥିଲେ। ତଥାପି କାହ୍ନୁ ଚରଣଙ୍କୁ ଘରକଥା ସବୁ ବୁଝିବାକୁ ହୁଏ।

ଆଖି ଆଗରେ ଦୁଇଭାଇ ଚାଲିଗଲେ। ପିଲାମାନେ ତାଙ୍କର ଛୋଟ, ଛୋଟ। ବଡ଼ପୁଅ କିଛି ରୋଜଗାର କରୁନଥିଲେ। ଘରର ଯାବତୀୟ ଦାୟିତ୍ୱ କାହ୍ନୁଚରଣଙ୍କ ଉପରେ। ସେ ଦରମା ଅଳ୍ପ ପାଆନ୍ତି କିନ୍ତୁ ପ୍ରତ୍ୟେକ ମାସରେ ବାପାଙ୍କ ପାଖକୁ ଟଙ୍କା ପଠାନ୍ତି।



Digitized by PPRACHIN, SOA

ଦେହ ଭଲ ହେବାରୁ କାହ୍ନୁଚରଣ ଚାକିରୀରେ ଯୋଗଦେଲେ। ଭାଇମାନଙ୍କୁ ପାଖକୁ ନେଇ ଆସିଲେ ପାଠପଢ଼ିବାକୁ। ଦିଅରମାନଙ୍କୁ ମୁଁ ପୁଅ ପରି ସ୍ନେହ କରିଛି। ଭଲମନ୍ଦ କଥା ମୁଁ ସ୍ୱାମୀଙ୍କ ଆଗରେ କେବେ କହେନି ତାଙ୍କର ମନ ଦୁଃଖ ହେବ ବୋଲି। ଯାହା ଦରକାର ହୁଏ ମୁଁ ମୋ ବାପାଙ୍କୁ ଖବର ଦିଏ।

କାହ୍ନୁଚରଣ ଭାଇମାନଙ୍କୁ ପଢ଼ାରେ ଯୋଗ୍ୟ କରି ବିଭାଘର କଲେ। ବିଭାଘର ବେଳେ ଶ୍ୱଶୁରଙ୍କ ଅବସ୍ଥା ଦେଖି ବାପଘରୁ ଆଣିଥିବା ସୁନାଜିନିଷ ଦେଇଦେଲି। ମୁଁ ନିଜ ପାଇଁ ଭାବେ ନାହିଁ। ଆଗ କାମ ଚଳୁ, ମୋ ବାପା ଶୁଣି ବହୁତ ମନଦୁଃଖ କରନ୍ତି। ମନେ ମନେ ଭାବନ୍ତି ଗୋଟିଏ ବୋଲି ଝିଅ ଏତେ ସୁନା ଦେଇଥିଲି ଦିନେ ପିନ୍ଧିବା ଦେଖିଲିନି ? ବାହାଘର ଦିଆନିଆରେ ମୋତେ ସମୟ ମିଳିଲା ନା ପିନ୍ଧିବାକୁ ନାଁ ସେ ଗହଣା ରହିଲା ? ଜାଣିଲି ମୁଁ ସୁନା ଦବାରୁ ବାପାଙ୍କ ମନଦୁଃଖ।

ଦିନେ ବାପାଙ୍କୁ ବୁଝାଇ କହିଲି କାହିଁକି ବ୍ୟସ୍ତ ହେଉଛ, ଆଗ କାମ ତ ଚଳିଗଲା। ମୋ କଥା ପଛକୁ ଥାଉ। ତୁମ ଯୋଇଁ ଅଳପ ଦରମା ପାଇବେ କୋଉଠୁ ସୁନାକିଣି ଦେବେ ?

ମୋ ବାପା ମୋତେ କିଛି ନ କହି ସେ ମୁହଁକୁ ଚାହିଁ ମନେ ମନେ ଭାବିଲେ ପିଲା ମୋର ଜନମ ଦୁଃଖୀ ?

ମୋ ବୋଉ ଲାଗି ମୋ ବାପାଙ୍କର ମନରେ ବହୁତ ଦୁଃଖ ? ବୋଉ ମୋର ଚିର ରୋଗଣା ? ସବୁ ମରି ମରି ପୁଅ ତିନୋଟି ଝିଅ ଗୋଟିଏ। ଜମିଦାରି ଉଠିଗଲା। ଯାହାଥିଲା ସରକାର ନେଇଗଲା। ଅଭାବ ଦୁଃଖ ସୁଖରେ ବଡ଼ ପୁଅଟିକୁ ପାଠ ପଢ଼ାଇ ମଣିଷ କଲେ ଝିଅଟିକୁ ବିବାହ କଲେ। ଆଉ ଦୁଇପୁଅରୁ ଗୋଟିଏ କଲେଜରେ ସାନଟି ଗାଁ ସ୍କୁଲରେ ପଢ଼େ ? ବାପାଙ୍କ ଦେହ ହଠାତ୍ ବହୁତ ଖରାପ ହେଲା। ସେ ଆସି ମୋ ପାଖରେ ରହିଲେ କଟକରେ। ଭିଣେଇ ଦେଖୁଥାନ୍ତି ବହୁତ ପଇସା ଖର୍ଚ୍ଚ ହେଲା।

କିନ୍ତୁ ଏପରି ଅବସ୍ଥାରେ ବାପା ମୋର ଚାଲିଗଲେ। ମୋ ପାଖରେ ଆମର ସାହା ଭରସାର ଆଧାର ଭାଙ୍ଗିଗଲା। ବାପାଙ୍କ ପାଇଁ ମୁଁ ବହୁତ କାନ୍ଦେ।



Digitized by PPRACHIN, SOA

ବୋଉ ଗାଁରେ ରହେ । କେତେବେଳେ କେତେବେଳେ ମୋ ପାଖରେ ରହେ। ମଝିରେ ମଝିରେ ବଡ଼ ଭାଇନାଙ୍କ ପାଖକୁ ଯାଏ। ଭାଇନା ସେତେବେଳକୁ ରାଉରକେଲାରେ ଥାଆନ୍ତି। ତାଙ୍କର ସାନଭାଇ ଦୁଇଜଣ ମଣିଷ ହୋଇନଥାନ୍ତି ?

ମୁଁ ବହୁତ ବ୍ୟସ୍ତହୁଏ ଭାଇ ଦୁଇଜଣଙ୍କ ପାଇଁ। ବାପା ଗଲାବେଳେ ମଝିଆ ଭାଇ କଲେଜରେ ପଢୁଥାଏ। ସାନଭାଇ ଗାଁ ସ୍କୁଲରେ ପଢୁଥାଏ। ସେହିବର୍ଷ ମଝିଆ ଭାଇ କଲେଜରେ ବିଏସି ପାସ୍ କରି କଳିକତା ଯାଦପୁର ଇଞ୍ଜିନିୟରିଂ କଲେଜରେ ପଢ଼ିଲା। କିନ୍ତୁ କାହ୍ନୁଚରଣ ମୋତେ ବହୁତ ବୁଝାନ୍ତି। ମନରେ ସାହସ ଦିଅନ୍ତି। କହନ୍ତି ଭାଙ୍ଗିପଡ଼ିଲେ ହବ ? ଧୈର୍ଯ୍ୟଧର ସମୟକୁ ଅପେକ୍ଷା କର। ସବୁଠିକ୍ ହୋଇଯିବ ? ଭାଙ୍ଗି ପଡ଼ିଲେ ଆମର ସଂସାର କିପରି ଚଳିବ ? ପିଲାମାନେ ଛୋଟ ଛୋଟ। ତାଙ୍କ ମୁହଁକୁ ଚାହିଁ କର୍ତ୍ତବ୍ୟ କରିବାକୁ ପଡ଼ିବ ଆମେ ତାଙ୍କୁ ମଣିଷ କରିବାକୁ ହେବ ? ମନକୁ ଟାଣ କର। ତୁମର ଦୁଇଭାଇ ଛୋଟ।

ମୋର ଭାଇମାନେ ତାଙ୍କ ବାପା, ମା ସବୁ ଘରର ଦାୟିତ୍ୱ ମୋ ଉପରେ। ଘର କରିଥିଲେ ପଥର ପଡ଼ିଲେ ସହି। ସତକଥା ତାଙ୍କ କଥା ଶୁଣିଲେ ମନରେ ସାହାସ ଆସେ। ତାଙ୍କରି କଥାର ପ୍ରେରଣାରେ ମୁଁ ଚିରକାଳ କର୍ତ୍ତବ୍ୟ ପଥରେ ଆଗେଇ ଚାଲିଛି। ବାପଘରପାଇଁ ହେଉ କି ଶାଶୁଘର ପାଇଁ ହେଉ ?

କାହ୍ନୁଚରଣ ବହୁତ ସାହାଯ୍ୟକାରୀ । ସେ ଅନେକ ଗରିବ ଅସହାୟ ପିଲାଙ୍କୁ ମଣିଷ କରିଛନ୍ତି ଘରେ ରଖି। ସମସ୍ତେ ତାଙ୍କର ନିଜର। ପର ବୋଲି କେବେ ଭାବନ୍ତି ନାହିଁ। ପର ପିଲାଙ୍କୁ ନିଜ ପିଲାପରି ଦେଖନ୍ତି। ସେମାନଙ୍କର ଖାଇବା ପିନ୍ଧିବାରେ କେବେ ମୁଁ ଉଣାକରି ନାହିଁ। ନିଜ ପୁଅ ଝିଅ ଯେମିତି ସେମାନେ ମଧ୍ୟ ସେମିତି।

କାହ୍ନୁଚରଣଙ୍କ ଜୀବନର ଆଦର୍ଶକୁ ମୁଁ ଅକ୍ଷରେ ଅକ୍ଷରେ ପାଳି ଆସିଛି। ସେଥିଲାଗି ସେ ଦିନେ ମୋତେ ପାଖରେ ବସାଇ କହିଲେ, ଦେଖ ପ୍ରିୟମ୍ବଦା ତୁମ ଭଳିଆ ସ୍ତ୍ରୀ ପାଇଛି ବୋଲି ମୁଁ ଭାଗ୍ୟବାନ। ଏତେ କମ୍ ପଇସା ତମକୁ ଦଉଛି ତୁମେ କିପରି ଘର ଚଳଉଛ ମୁଁ ଜାଣିପାରୁନି ?



Digitized by PPRACHIN, SOA

ମୁଁ ହସି ଦେଇ କହିଲି ଘର ଭିତରେ ହାନିଲାଭ ତୁମକୁ ଜଣାଇ ଲାଭ କ'ଣ ? ଭଗବାନ ଯାହାଦେଲେ ଆନନ୍ଦରେ ଚଳିବା । ଅଭାବ କହିଲେ, ଆମକୁ କିଏ ଦେବ ।

ବାପା ଯେତେବେଳେ ଥିଲେ ଅଭାବ ପୂରଣ କରୁଥିଲେ । ସେ ତ ସେ ପୁରରେ । ବାପାଙ୍କ କଥା ମନେ ପଡ଼ି ମୋ ଆଖିରୁ ଲୁହ ଗଡ଼ିପଡ଼େ । ବାପା ତ ମୋର ଭାଇ ମା'କୁ ଛାଡ଼ି ଚାଲିଗଲେ । ଶ୍ୱଶୁରଙ୍କ ଅବସ୍ଥାତ ଭଲ ନୁହେଁ । ଭାଙ୍ଗି ପଡ଼ିଲେ କ'ଣ ହେବ । ଭରସା କର ପ୍ରଭୁଙ୍କ ଉପରେ - ଦିନ ଆସିବ ସବୁ ପୂରଣ ହେବ । ସବୁବେଳେ ସ୍ୱାମୀଙ୍କୁ ସାହସ ଦବାକୁ ଚେଷ୍ଟା କରେ ।

ମନର ଦମ୍ଭ ସବୁଠାରୁ ବଡ଼ । ଅତୀତ କଥା ମନେପକାଏ ଶୋଇଲା ବେଳେ । ଆଖିରୁ ଲୁହ ଜକେଇ ଆସେ ? ସବୁ ସହିଯାଏ ଜଗନ୍ନାଥଙ୍କୁ ସ୍ମରଣ କରି ।

ଜଗନ୍ନାଥଙ୍କ କୃପାରୁ ଚାକିରିରେ ତାଙ୍କର ଉନ୍ନତି ହେଲା । ଭାଇ ପୁତୁରା ସମସ୍ତଙ୍କୁ ଚାକିରୀରେ ଲଗାଇ ଦେଲେ ।

କାହ୍ନୁଚରଣଙ୍କର ଗୋଟିଏ ବୋଲି ଭଉଣୀ ତାଙ୍କ ନାଁ ସୁଶିଳା । ଭଉଣୀକୁ ବହୁତ ଭଲପାଆନ୍ତି । ତାଙ୍କ ଭିଣେଇଙ୍କ ନାଁ ଅନନ୍ତ ତ୍ରିପାଠୀ । ସେ ଥିଲେ ଏମ୍.ଏଲ୍.ଏ. । ରଜାନଅରଠାରୁ ପଟ୍ଟାମୁଣ୍ଡାଇ ପର୍ଯ୍ୟନ୍ତ ତାଙ୍କୁ କିଏ ନ ଜାଣେ । ଅନନ୍ତ ବାବୁ ବହୁତ ସାହାଯ୍ୟକାରୀ ଲୋକ । ତାଙ୍କ ଗାଁରେ ପ୍ରାଇମେରି ସ୍କୁଲ ହାଇସ୍କୁଲ ସେ ଗଠନ କରିଥିଲେ । ମୋ ନଣନ୍ଦଙ୍କର ସାତ ପୁଅ । ସମସ୍ତେ ଯୋଗ୍ୟ ।

କାହ୍ନୁଚରଣ ଭଣଜାମାନଙ୍କୁ ବହୁତ ଭଲ ପାଆନ୍ତି । ବଡ଼ ଭଣଜା ଏମ୍.ଏ ପଢ଼ିଲାବେଳେ ପାଖରେ ରଖିଥିଲେ । ତାଙ୍କର ପାଖରେ ଅର୍ଥ ନଥିଲା ସିନା କିନ୍ତୁ ମନ ବହୁତ ଉଚ୍ଚରେ ।

କାହ୍ନୁଚରଣ ଛାତ୍ରଛାତ୍ରୀ କି ବନ୍ଧୁବାନ୍ଧବ ଯିଏ ଆସିବେ, ଡାକ ପକାଇବେ ମୋତେ । ପିଲାମାନେ ଆସିଲେଣି ଖାଇବାକୁ ଆଣ । ଘରକୁ ଆସିଥିବା ମଣିଷକୁ ନ ଖୋଇଛାଡ଼ିବେ ନାହିଁ । ମୋ ହାତ ରନ୍ଧା କୁଆଡ଼େ ବହୁତ ଭଲ - ସମସ୍ତେ ଖୁସି ହୋଇ ଖାଆନ୍ତି । କାହ୍ନୁଚରଣ ଖିର ପିଇବାକୁ ଭାରି ଭଲ ପାଆନ୍ତି । ଭଉଣୀ



Digitized by PPRACHIN, SOA

ସ୍ନେହ ଆସିଲେ ତାକୁ ସବୁବେଳେ କହନ୍ତି - ତୋ ନାନୀ ମତେ ଖିର ବେଶୀ ଦେଉନି - ସ୍ନେହ ହସି ଦିଏ - କହେ ଖିରଚୋରା ଗୋପୀନାଥ।

ସ୍ୱାମୀଙ୍କ କଥାରେ କୌଣସି ଆପତ୍ତି ଅଭିଯୋଗ କରିନାହିଁ। ଏତେବର୍ଷ ପରେ ମନେ ପଡ଼େ କେତେ ଅଲିଭା ସ୍ମୃତି।

ମୁଁ ଯେତେବେଳେ ଶାଶୁଘରକୁ ଆସିଲି ପଣ୍ଡିତ ଘର ବୋଲି ଡାକ ଥିଲା। ସାନଖୁଡୁତାଶୁର ଡାକ୍ତର କେଶବ ମିଶ୍ର। ଶ୍ୱଶୁର ଥିଲେ କଲିକତାରେ ବଡ଼ ଜ୍ୟୋତିଷ ବୈରାଗି ମିଶ୍ର। ଟୋଲରେ ଶ୍ୱଶୁର ଥିଲେ ପଣ୍ଡିତ ବଳରାମ ମିଶ୍ର। ବଡ଼ ଖୁଡୁତା ଶଶୁର ହଳଧର ମିଶ୍ର ସେ କଲିକତାରେ ବଡ଼ କମ୍ପାନୀରେ ଚାକିରୀ କରିଥିଲେ ଏକାନ୍ନ ପରିବାର। ତାଙ୍କର ଘରର ଇଷ୍ଟଦେବୀ ମା' ଦୁର୍ଗା। ଜେଜେ ଶ୍ୱଶୁର ବହୁତ ଆଗରୁ ଚାଲିଯାଇଥିଲେ। ଘର ଆଗରେ ଧାନ ଖଣି ଗୋଟା ଥିଲା। ଘର ଭିତରେ ଧାନ ଅମାର ଥିଲା। ମୋତେ ଖୁଡୁତାଶୁର - ଶ୍ୱଶୁର ବହୁତ ଭଲ ପାଉଥିଲେ। କାରଣ ଯଦିଓ ମୁଁ ଥିଲି ଜମିଦାର ଘରଝିଅ ଏବଂ ମୁଁ ଏତେ କାମ କରୁଥିଲି। ସମସ୍ତଙ୍କୁ ସ୍ନେହ ଶ୍ରଦ୍ଧା କରୁଥିଲି। ମୋର ସାଧାରଣ ଚଳଣି୍ ତାଙ୍କୁ ସ୍ତମ୍ଭିଭୂତ କରି ଦେଉଥିଲା।

ପୁତୁରାମାନେ ଆସିଲେ ସାନଖୁଡ଼ି ଶାଶୁଙ୍କ ଗୋଡ଼ ତଳେ ଲାଗେନି। ସେ, ଗାଁ ଗଣ୍ଡା ବୁଲି ଖିର ଦହି ଆଣି ପୁତୁରାମାନଙ୍କୁ ଖାଇବାକୁ ଦେବେ।

ଆଜି ଶାଶୁ, ଶ୍ୱଶୁର, ଖୁଡୁତାଶୁର, ଖୁଡ଼ିଶାଶୁ ସବୁ ଗଲେଣି। କପୂର ଯାଇଛି କନା ପଡ଼ିଛି। ସବୁ ମନେ ପଡ଼ିଯାଏ ଶ୍ୱଶୁର, ଖଡୁତାଶୁରଙ୍କ ପାଇଁ। ବାପ ପରି କେତେ ଭଲ ପାଉଥିଲେ। ଏପର୍ଯ୍ୟନ୍ତ ମୋ ଶାଶୁଘରେ ସ୍ନେହ ଶ୍ରଦ୍ଧା ଅଛି ?

କାହ୍ନୁଚରଣ ତାଙ୍କ ଗାଁକୁ ବହୁତ ଭଲପାଆନ୍ତି। ମଝିରେ ମଝିରେ ଗାଁକୁ ଯାଆନ୍ତି। ଗାଁକୁ ଗଲେ ଭାଇମାନଙ୍କୁ ଡାକିବେ। ଖୁଡୁତାଶୁରଙ୍କ ପୁଅମାନେ କଟକ ଭୁବନେଶ୍ୱରରେ ଚାକିରୀ କରନ୍ତି। ଭାଇନା ଡାକିଲେ ସେମାନେ କେବେ ମନା କରିବେ ନାହିଁ। ସାଙ୍ଗ ହୋଇ ଗାଁକୁ ଯିବେ ? ଗାଁରେ ପହଞ୍ଚି ଖାଇ ପିଇ ବୁଲାବୁଲି କରି ଫେରିବେ ?

କାହ୍ନୁଚରଣ କାହା କଥାକୁ ଧରନ୍ତିନି ? ସେ ବଡ଼ ଧୈର୍ଯ୍ୟଶୀଳ ଲୋକ। ପ୍ରତ୍ୟେକ କଥାରେ ହସ। ଯେତେ ଦୁଃଖ ଥାଉ ଆମେ ଅଧର୍ଯ୍ୟ ହବା କେବେ



Digitized by PPRACHIN, SOA

ଦେଖିନୁ? ବହୁ କୁଟୁମ୍ବରେ କେତେ ମତାନ୍ତର ହୁଏ। ତା'ପରେ ପୁଣି ଠିକ୍ ହୋଇଯାଏ।

କାହ୍ନୁଚରଣ ଭଲମନ୍ଦ କଥା କେବେ ତାଙ୍କ ବାପାଙ୍କୁ କହନ୍ତି ନାହିଁ। ମନଦୁଃଖ କରିବେ ବୋଲି। ସେ ରିସର୍ଚ୍ଚ କଲାବେଳକୁ ରେଭେନ୍ସାରେ ଥିଲେ। ସେ କିଛିଦିନ ପରେ ପିଲାମାନଙ୍କୁ ଛାଡ଼ି ଜଗନ୍ନାଥଙ୍କ ବିଷୟରେ ରିସର୍ଚ୍ଚ କରିବାକୁ ଗଲେ କଲିକତା। ସରକାରୀ ସାହାଯ୍ୟ ପାଇଲେ ନାହିଁ। ନିଜ ଖର୍ଚ୍ଚରେ ସେ ଗବେଷଣା କଲେ। ଚାରିଝିଅ ତିନିପୁଅରେ ଯିବା ଆସିବା ଘର ଭରପୁର। କୁଣିଆ ମଇତ୍ର ସବୁଦିନେ ଲାଗି ରହିଥାଏ। ପିଲାଙ୍କୁ ଧରି ବହୁତ ଅଭାବରେ ମୁଁ ଚଳୁଥାଏ। ଏ ସମୟରେ ବାପା ମୋର ନଥାନ୍ତି।

କିନ୍ତୁ ବାପା ତାଙ୍କର ଗଲାବେଳେ ଯେଉଁ ଗାଈଟି ଦେଇ ଯାଇଥିଲେ ସେହି ଗାଈ ଆମର ସଂସାର ଚଳେଇଲା ଜାଣ।

ଶ୍ୱଶୁର ମଝିରେ ମଝିରେ ଆସି ଆମ ପାଖରେ ରହନ୍ତି କଟକରେ। ଚକ୍ରଧର ବୋଲି ପୁଝାରିଟିଏ ଥିଲା। ସେତେବେଳେ ସମୟରେ ଆମକୁ ବହୁତ ସାହାଯ୍ୟ କରିଛି। ରାତିରେ ସେ ଶୋଇବନି ମାଲ୍‌ଗୋଦାମ ପାଖ କ୍ୱାଟରରେ ଆମେ ଥାଉ। ସେ ରାତି ଜଗି ରହିଥିବ। ମାଲଗୋଦାମବାଲା ମଧ ବହୁତ ସାହାଯ୍ୟ କରନ୍ତି। ଯାହା ଯେତେବେଳେ ଦରକାର ପଇସାପତ୍ର ଚକ୍ରଧର ଯାଇଁ ନେଇଆସେ।

କାହ୍ନୁଚରଣଙ୍କୁ ମାଲଗୋଦାମବାଲା ବହୁତ ଭଲ ପାଆନ୍ତି। ପଛରେ କାହ୍ନୁଚରଣ ଇଷ୍ଟ ହଷ୍ଟେଲରେ ସୁପରିଣ୍ଟେଣ୍ଡେଣ୍ଟ୍ ହୋଇ ରହିଲେ। ବହୁତ ବଡ଼ କ୍ୱାଟର ମିଳିଲା।

+ + +

କାହ୍ନୁଚରଣ ଯେତେବେଳେ ପାରଳାଖେମୁଣ୍ଡିରେ ଚାକିରୀ କରିଥିଲେ ସେଠାରେ ଦଶବର୍ଷ ରହିଲା ପରେ ତାଙ୍କୁ ଟ୍ରାନ୍ସଫର ହେଲା ପୁରୀ କଲେଜକୁ।

ସେତେବେଳକୁ ମଝିଆ ଝିଅକୁ ଚାରି ପାଞ୍ଚବର୍ଷ ହୋଇଥାଏ। କାହ୍ନୁଚରଣ କଟକ ଆସିଥାନ୍ତି ଗୋଟାଏ ବିଭାଗର ଭୋଜିକୁ। ପୁରୀ ରାଜା ଗାଦିରେ ବସୁଥାନ୍ତି।



Digitized by PPRACHIN, SOA

ବଡ଼ଦାଣ୍ଡ ବହୁ ଗହଳି ହୋଇଥାଏ ଉତ୍ସବ ଲାଗିଥାଏ । ସେଦିନ ମାର୍ଗଶିର ମାସ ଗୁରୁବାର ଦୁଇ ଭଉଣୀ ଗୋଟାଏ ଘରେ ରାତିରେ ଶୋଇଥାନ୍ତି ପଢ଼ିବା ପାଇଁ। ଆଉ ଗୋଟାଏ ଘରେ ମୁଁ ଦୁଇପୁଅଙ୍କୁ ଧରି ଶୋଇଥାଏ ।

ଗୋପିଆ ବୋଲି ଚାକର ପିଲାଟିଏ ଥିଲା ଆମ ଘରେ ୩/୪ ବର୍ଷ ହେଲା । ମୋ ଦେହ ଖରାପ ସବୁବେଳେ ହୁଏ । ସେ ପିଲାଙ୍କର ସବୁକାମକରେ । ରାତିରେ ପିଲାଙ୍କୁ ଜଗି ଶୁଏ । .. ରାତି ଗୋଟାଏ ହବ ବଡ଼ ଝିଅ ବୁଲୁ ଶୋଇବା ଘର କବାଟ ବାଡ଼େଇ ଡାକ ପକାଇ ମୋତେ କହିଲା ଝିଅ ନାହିଁ। ମୁଁ ଭାବିଲି ବାଥ୍‌ରୁମ୍ ଯାଇଥିବ । ଗୋପିଆକୁ ଚାରିଆଡ଼େ ଖୋଜିକି ନ ପାଇବାରୁ ଦାଣ୍ଡରେ ଡାକ ପକାଇଲି ପଡ଼ିଶା ଘରକୁ। ସାଇ ପଡ଼ିଶା ସବୁ ଉଠି ଖୋଜିଲେ, କେହି ପାଇଲେ ନାହିଁ। ଦିଅର ସଂସ୍କୃତ କଲେଜରେ ଚାକିରୀ କରିଥାନ୍ତି। ସେ ପୁରୀ ହେରା ଗୌରି ସାହିରେ ଥାଆନ୍ତି। ତାଙ୍କ ପାଖକୁ ଖବର ପଠାଇଲି। ସେ ଶୁଣି ସଙ୍ଗେ ସଙ୍ଗେ ଆସିଲେ । ସେ ଚାରିଆଡ଼େ ଖୋଜି ଖୋଜି ନିରାଶ ହୋଇଗଲେ । ଶେଷରେ ଭାଇଙ୍କ ପାଖକୁ ଫୋନ୍ କଲେ କଟକ ।

ଝିଅ ପାଇଁ ମୁଁ କାନ୍ଦି ଗଡୁଥାଏ । ଘରେ ରନ୍ଧାବଢ଼ା ନଥାଏ । ପିଲାଙ୍କୁ ମୋ ମଉସା ମାଉସି ଆସି ନେଇଗଲେ । ମଉସା ପୁରୀରେ ଥାଆନ୍ତି । ପିଲାଙ୍କୁ ଖିଆପିଆ କରି ଘରେ ରଖିଥାନ୍ତି । ଝିଅ ଯିବା ଶୁଣି କାହ୍ନୁଚରଣ କଟକରୁ ପଳେଇ ଆସିଲେ ପୁରୀ । ତାଙ୍କ ସାଙ୍ଗରେ ଆନନ୍ଦ ମିଶ୍ର ବଡ଼ ପଣ୍ଡିତ ଯାଇଥାନ୍ତି। ସେ ଆସି କାହ୍ନୁଚରଣଙ୍କୁ ବହୁତ ବୁଝାଇ କହିଲେ ଆପଣ କାହାରି ଅନିଷ୍ଟ କରିନାହାଁନ୍ତି। ଝିଅ ନିଶ୍ଚୟ ମିଳିବ ?

କାହ୍ନୁଚରଣ ଘରେ ପହଞ୍ଚିଲେ ସନ୍ଧ୍ୟାବେଳକୁ ଥାନାରୁ ଖବର ମିଳିଲା ଝିଅ ମିଳିଛି ବ୍ରହ୍ମଗିରିରୁ। ମୋ ମାମୁଁଙ୍କ ଶ୍ୱଶୁର ବ୍ରହ୍ମଗିରି ଥାନାରେ ଇନ୍‌ସିପେକ୍ଟର ଥିଲେ। ସେ ଝିଅକୁ ଆଣି ଘରେ ରଖିଛନ୍ତି।

ପୁରୀ ରଜା କାହ୍ନୁଚରଣଙ୍କୁ ବହୁତ ଭଲ ପାଆନ୍ତି। ବିଶ୍ୱନାଥ ମଉସା, କାହ୍ନୁଚରଣ ଗଲେ ରାଜାଙ୍କ ପାଖକୁ। ରାଜା ସଙ୍ଗେ ସଙ୍ଗେ ଶୁଣି ହାତୀ ପଠେଇଲେ ବ୍ରହ୍ମଗିରି। ମଉସା ଓ କାହ୍ନୁଚରଣ ଗଲେ ଝିଅକୁ ଆଣିବା ପାଇଁ। ବ୍ରହ୍ମଗିରିରୁ ଝିଅକୁ ନେଇ କରି ଆସିଲେ । ପୁରୀ ଦାଣ୍ଡ ଲୋକାରଣ୍ୟ ଝିଅକୁ ଦେଖିବାକୁ ଲୋକ ଭିଡ଼। ଚାରି ପାଞ୍ଚବର୍ଷର ଝିଅ କାନ୍ଦୁଥାଏ।



Digitized by PPRACHIN, SOA

କାହ୍ନୁଚରଣଙ୍କ ଜୀବନରେ ଇୟେ ବହୁତ ଧକ୍କା। ସେ କହିବେ ମୋର ଜଗନ୍ନାଥ ଅଛନ୍ତି କେହି କିଛି କରିପାରିବେ ନାହିଁ।

ଯେତେବେଳେ ଝିଅ ହଜିବା କଥା ମୋ ବାପା ଶୁଣିଲେ ମୁଣ୍ଡକୁ ବାଡ଼େଇ ଦେଲେ। ବାପାଙ୍କ କଥାଶୁଣି ମୋ ମୁଣ୍ଡ ଘୁରିଗଲା ଦୁଃଖରେ ବାପାଙ୍କ ପାଇଁ। ମୁଁ ଓ କୁନି ମାଉସୀ ଏକାସାଙ୍ଗର। ମୋର ମାଉସୀ ବାହା ହୋଇଥାଏ ପୁରୀରେ। ମଉସା ଚାକିରୀ କରିଥିଲେ ପୁରୀ କଲେଜରେ। ସେ ବହୁତ ଭଲ ଲୋକ। ମଉସା ଭଲ ପାଆନ୍ତି ମୋତେ। ମାଉସୀ ମଧ୍ୟ ବହୁତ ଆଦର କରେ ମୁଁ ଗଲେ। ମୁଁ ପୁରୀ ଗଲେ ମାଉସୀ ଘରକୁ ଯାଏ। ମୋତେ ଦେଖିଲେ ମଉସା ଭାରି ଖୁସି ହୋଇଯାଆନ୍ତି। କହିବେ ମା'ରେ ଆସିଲୁ, ମୋ ମୁଣ୍ଡରେ ହାତ ମାରି କହିବେ କାହ୍ନୁବାବୁ ଆସିଛନ୍ତି। ମୁଁ କହେ ମଉସା ଆସିଛନ୍ତି । ସେ ଡାକ ପକାଇବେ ମାଉସୀକୁ ବାଡ଼ିରେ ଯାହାଥିବ କହିବେ ମାଉସୀ କୁ ଦବାକୁ ? ମଉସା ଚାଲିଗଲେ ସେପାରିକି। ମାଉସୀ ମଧ୍ୟ ଚାଲିଗଲା । ମଉସା ମାଉସୀଙ୍କର ସ୍ନେହ ଶ୍ରଦ୍ଧା ସବୁ ମୋର ମନେପଡ଼େ।

ସେହି ଅଲିଭା ସ୍ମୃତି।

ପିଲାମାନଙ୍କର ଦେହ ଖରାପ ହେଲେ ମୁଁ ଦୌଡ଼ିଯାଏ ଭିଣେଇ ଭଉଣୀଙ୍କ ପାଖକୁ । ବସିନାନୀ, ଶରତ ଭାଇନା ମେଡିକଲରେ କ୍ୱାଟର ପାଇଥାନ୍ତି। ନାନୀ ବିଭା ହେଲାବେଳେ ମୋତେ ଲେମ୍ବୁନାନୀ କି ୧୧ ବର୍ଷ । ମୋତେ ଦଶ ବର୍ଷ। ଆମେ ଦୁଇଭଉଣୀ ବହୁତ ଥଟ୍ଟା କରୁ ଭାଇନାଙ୍କୁ ? ଭାଇନା ଭାରି ଶାନ୍ତ ଶିଷ୍ଟ ସାହାଯ୍ୟକାରୀ। ସେମାନେ ଆମକୁ ଯାହା ସାହାଯ୍ୟ କରିଛନ୍ତି ଜୀବନରେ ମୁଁ ଭୁଲିବି ନାହିଁ। ଆମ ଦୁଃଖ ସୁଖରେ ସାହା ଭରସା ହୋଇଛନ୍ତି। ବିପଦ ଆପଦ ବେଳେ ଆଶା ଦେଇଛନ୍ତି। ନାନୀ ଭାଇନା ସେ ପାରିକି ଗଲେଣି। ସେମାନେ ଆଜି ମୋ ଜୀବନରେ ଅଲିଭା ସ୍ମୃତି ପାଲଟି ଯାଇଛନ୍ତି। ମୁଁ ଜଗନ୍ନାଥଙ୍କୁ ଡାକୁଛି ତାଙ୍କ ଆଶୀର୍ବାଦ ଥାଉ ତାଙ୍କ ପିଲାଙ୍କ ଉପରେ। ସେମାନେ ଆନନ୍ଦରେ ରୁହନ୍ତୁ କଥାରେ ଅଛି –

ବାପ ମା ସୁକୃତରୁ ପିଲା ହୁଏ ସୁଖି
ପିଲା ଯେବେ ସୁଖି ହୁଏ ନାଁ ପାଣି ରଖି ॥

X X



Digitized by PPRACHIN, SOA

ଯେତେବେଳେ କାହ୍ନୁଚରଣ ଜଗନ୍ନାଥଙ୍କ ବିଷୟରେ ଗବେଷଣା କରିବାକୁ କଲିକତା ଗଲେ, ପଇସାଟିଏ ପାଖରେ ନଥାଏ। ସରକାର କିଛି ମଧ୍ୟ ସାହାଯ୍ୟ କଲେନି। ମୁଁ ବାଧ୍ୟ ହୋଇ ମୋ ବାହାଘର ପାଟ ବିକି ପଠାଇଲି ଟଙ୍କା କଲିକତାକୁ। କାହ୍ନୁଚରଣଙ୍କର ଅଜା କାଳିଘାଟରେ ଥିଲେ।

ସେ ବହୁତ ସାହାଯ୍ୟ କଲେ। ତାଙ୍କ ପାଖରେ ରଖିଲେ କାହ୍ନୁଚରଣଙ୍କୁ। ମୁଁ ପିଲାଙ୍କୁ ଧରି ଅଭାବ ଅସୁବିଧାରେ ଚଳୁଥାଏ କଟକରେ।

ସେତେବେଳେ ବଡ଼ଝିଅ ଜ୍ୟୋତି ମାଟ୍ରିକ୍ ପାସ୍ କରି କଲେଜରେ ପଢୁଥାଏ। ତା'ର ବିବାହ ପ୍ରସ୍ତାବ ଆସିଥାଏ। ମୋର ଇଚ୍ଛା ନଥାଏ ପନ୍ଦର ବର୍ଷ ଷୋଳ ବର୍ଷର ଝିଅକୁ ବିଭାଘର କରିବାକୁ। ଏଣେ ପଇସା ପତ୍ରର ଅସୁବିଧା। ପିଲାଏ ହଇରାଣ ହଉଛନ୍ତି ଚଳିବାକୁ। ଏତେ ଅସୁବିଧାରେ ଝିଅ ବାହାଘର।

ମୋର ବଡ଼ଭାଇନା ସେତେବେଳେ ରାଉରକେଲାରେ ଇଞ୍ଜିନିଅର୍ ଥାଆନ୍ତି। ସେ ମଧ୍ୟ ଖବର ପଠାଇଲେ। ଜ୍ୱାଇଁ ଇଞ୍ଜିନିଅର୍। ଫରେନ୍‌ରୁ ଆସି ସିମ୍ନେସ କମ୍ପାନୀରେ ଚାକିରୀ କରିଛନ୍ତି ଭଲ ପିଲା ମନା କରିବ ନାହିଁ। କାହ୍ନୁବାବୁଙ୍କୁ ଖବର ଦେଲେ ସେ ଆସି ପିଲାକୁ ଦେଖନ୍ତୁ। ଏପରି ସୁପାତ୍ର ହାତଛଡ଼ା କରିବା କଥା ନୁହେଁ।

ମୁଁ ଖବର ଦେଲି କଲିକତା। କାହ୍ନୁଚରଣ ଆସିଲେ ପାଞ୍ଚ ଛଅ ଦିନ ରହି – ସେ ରାଉରକେଲା ଗଲେ ଜ୍ୱାଇଁ ଦେଖିବାକୁ। ଶ୍ୱଶୁର ଥାଆନ୍ତି। ଶ୍ୱଶୁର କହିଲେ ନାତୁଣୀ ବାହାଘର କରିବାକୁ।

କାହ୍ନୁଚରଣ ମନାକରି ପାରିଲେ ନାହିଁ ତାଙ୍କ ବାପାଙ୍କ ପାଇଁ। ବାପା ତାଙ୍କର ଯାହା କହିବେ ସେ ଶୁଣନ୍ତି। ଯାହାହେଉ ସମସ୍ତଙ୍କ ସାହାଯ୍ୟରେ ବିଭାଘର ସରିଲା।

ଝିଅକୁ ଶାଶୁଘରକୁ ପଠାଇଲା ବେଳକୁ ମୁଁ ଚେତାଶୂନ୍ୟ ହୋଇପଡ଼ିଲି। ଝିଅଟି ମୋର ଶାଶୁଘରେ କିପରି ଚଳିବ ଏହି ଚିନ୍ତାରେ ମନ ମୋର ଘାରି ହଉଥାଏ।

କାହ୍ନୁଚରଣଙ୍କ ମନଖୁସି ସେ ମୋତେ ବୁଝେଇଲେ ଆମର ଚାରିଝିଅ ଚାରି ପ୍ରକାର ଯୋଗାଁ କରିବା। ଜଗନ୍ନାଥ ସାହାଯ୍ୟ କରିବେ। ଧୈର୍ଯ୍ୟଧର



Digitized by PPRACHIN, SOA

ଗୋଟାଏ କାମରେ ମୁଣ୍ଡ ପୁରାଇଛି ସେଥିରେ ପାସ୍ କଲେ ସବୁ ସୁଧୁରି ଯିବ। ତୁମେ କେତେ ଖୁସି ହେବ।

ମୁଁ ଜାଣୁଛି ତୁମେ ପିଲାଙ୍କୁ ନେଇ କେତେ ହଇରାଣ ହଉଛ। କିନ୍ତୁ ତୁମ ପାଇଁ ମୁଁ ସବୁ କରି ପାରୁଛି। ଏହାକହି କାହ୍ନୁଚରଣ ମୋ ହାତକୁ ଧରି ପକାଇଲେ।

ସେହିପରି ପିଲାଙ୍କୁ ଧରି ଦୁଃଖ ସୁଖରେ ଚଳିଲି ମୁଁ। କାହ୍ନୁଚରଣ ଝିଅ ବାହାଘର ପାଇଁ ପୁରୀ ବ୍ୟାଙ୍କରୁ ଟଙ୍କା ଆଣିଥିଲେ। ବର୍ଷକ ପରେ ବ୍ୟାଙ୍କରୁ ଟଙ୍କା ଦବା ପାଇଁ ନୋଟିସ୍ ଆସିଲା। ନଦେଲେ କେଶ୍ କରିବେ।

ନୋଟିସ୍ ପାଇ ମୁଁ ବ୍ୟସ୍ତ ହୋଇ ପଡ଼ିଲି ଏବଂ ସ୍ୱାମୀଙ୍କ ପାଖକୁ ଖବର ଦେଲି। ଖବର ପାଇ କାହ୍ନୁଚରଣ ଚାରି ପାଞ୍ଚଦିନ ପାଇଁ ଘରକୁ ଆସି ସବୁ ଶୁଣି ବ୍ୟସ୍ତ ହୋଇ ପଡ଼ିଲେ। ପାଖରେ ଗୋଟିଏ ପଇସା ନାହିଁ। କେମିତି କୋଉଠୁ ଆଣି ଦେବେ ?

ସ୍ୱାମୀଙ୍କର ବ୍ୟସ୍ତ ହେବା ଦେଖି ମୁଁ ସହି ନ ପାରି ମୋ ପାଖରେ ଯାହା ସୁନା ଥିଲା, ଏବଂ କାହ୍ନୁଚରଣ କଲିକତା ବିଶ୍ୱବିଦ୍ୟାଳୟ ପ୍ରଥମ ସ୍ଥାନ ଅଧିକାର କରି ଯେଉଁ ଗୋଲ୍ଡ ମେଡାଲ୍ ପାଇଥିଲେ ସବୁ କାଢ଼ି ତାଙ୍କୁ ଦେଇ ଦେଲି ବ୍ୟାଙ୍କର କରଜ ସୁଝିବାକୁ। କାହ୍ନୁଚରଣଙ୍କର ଇଚ୍ଛା ନଥିଲେ ମଧ ବାଧ ହୋଇ ସୁନା ବିକି ବ୍ୟାଙ୍କ ଲୋନ୍ ସୁଝିଲେ। କିନ୍ତୁ ସ୍ୱର୍ଣ୍ଣ ପଦକ ବିକିଲାରୁ ତାଙ୍କ ମନ ବହୁତ ଦୁଃଖ ହୋଇ ପଡ଼ିଲା।

ଏହିପରି ଦୁଃଖ କଷ୍ଟରେ ଦୁଇବର୍ଷ ଚାଲିଗଲା। କାହ୍ନୁଚରଣ ଜଗନ୍ନାଥଙ୍କ କୃପାରୁ କୃତିତ୍ୱ ସହ ପି.ଏଚ୍‌ଡି କରି ଘରକୁ ଫେରିଲେ। କିଛିଦିନ ପରେ ଶ୍ୱଶୁର ମୋର ଦୁଇ ପୁଅ ଦିଅରଙ୍କର ପୁଅକୁ ଗାଁରେ ବ୍ରତ କଲେ। ଶ୍ୱଶୁରଙ୍କର ପଇସା ନଥାଏ କିପରି ବାହାଘର ବ୍ରତଘର କରନ୍ତି ଆମେ ବୁଝିପାରୁନା ?

କିଛିଦିନ ପରେ ଦ୍ୱିତୀୟ ଝିଅର ଝିଆରି ବିଭାଘର ଏବଂ ମୋର ସାନପୁଅର ବ୍ରତଘର ହେଲା କଟକରେ। ଜୋଇଁ ଡାକ୍ତର ଜଗନ୍ନାଥଙ୍କ କୃପାରୁ ସବୁ ସୁରୁଖୁରରେ ହଉଥାଏ।

କାହ୍ନୁ ଚରଣଙ୍କର ଜଗନ୍ନାଥଙ୍କ ଉପରେ ବଡ଼ ବିଶ୍ୱାସ କେତେ ବଡ଼ ଅସୁବିଧାରୁ ପ୍ରଭୁ ତାଙ୍କୁ ରକ୍ଷା କରିଛନ୍ତି।



Digitized by PPRACHIN, SOA

ରେଭେନ୍ସାରେ ତେର ବର୍ଷ ରହିଲେ ପି.ଏଚ୍‌ଡି ପାଇଲା ପରେ ସେ ପ୍ରଫେସର ହବା କଥା। ତାଙ୍କୁ କରାଇ ଦେଲେ ନାହିଁ। ରେଭେନ୍ସାରୁ ବଦଳି ହୋଇଆସିଲେ ବିଜେବି କଲେଜକୁ ଓଡ଼ିଆ ବିଭାଗରେ ମୁଖ୍ୟ ହୋଇ। ପ୍ରଫେସର ହୋଇନଥିବାରୁ ତାଙ୍କ ମନ ବଡ଼ ଦୁଃଖଥାଏ। ଭୁବନେଶ୍ୱର ଆସିଲା ପରେ ଘରଖଣ୍ଡେ କଲେ ବିବେକାନନ୍ଦ ମାର୍ଗରେ।

ବାପା ତାଙ୍କର ଶୁଭ ଦେଇଥିଲେ। ପ୍ରତିଷ୍ଠା କରିଥିଲେ। ଘର ପାଇଁ ମୁଁ କମ୍ କଷ୍ଟ କରିନାହିଁ। ପିଲାମାନଙ୍କୁ ରାନ୍ଧିବାଢ଼ି ଖାଇବାକୁ ଦେଇ ଦଶଟା ବେଳକୁ ଆସେ ସ୍ୱାମୀଙ୍କ ସାଙ୍ଗରେ ଘର ପାଖକୁ ନିଜେ ନ ଦେଖିଲେ ହୁଏ ନାହିଁ।

ପଇସା ଅଭାବରେ କିଛିଦିନ ଘରକାମ ବନ୍ଦ ହେଲା। ସରକାରଙ୍କଠାରୁ ଲୋନ୍ ଆଣି ଘରକାମ ସାରିଲୁ ? ଭାଗ୍ୟକୁ ଘରଭଡ଼ା ଲାଗିଗଲା।

+ + +

ଭୁବନେଶ୍ୱର ଚାରି ପାଞ୍ଚବର୍ଷ ରହିଲା ପରେ କାହ୍ନୁଚରଣ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଇଣ୍ଟରଭ୍ୟୁ ଦେଇ ପ୍ରଫେସର ହେଲେ। ଜଗନ୍ନାଥ ତାଙ୍କୁ ସାହାଯ୍ୟ କଲେ। ବରହମପୁର ବଦଳି ହେଲା। ପିଲାମାନଙ୍କୁ ନେଇ ବରହମପୁରରେ ରହିଲୁ। କିଛିଦିନ ପରେ ଭଞ୍ଜବିହାରରେ ଆମକୁ ପ୍ରଫେସର କ୍ୱାଟର ମିଳିଲା। ବହୁତ ସୁନ୍ଦର କ୍ୱାଟର। ଆମ୍ବଗଛ – ଝାଉଁବଣ ଭିତରେ ଘର। ଝାଉଁ ଗଛର ପବନ ! ! କି ସୁନ୍ଦର – ସେ ଅନୁଭୂତି। ଭୁଲି ହେବନି। କଲୋନୀର ପ୍ରଫେସରଙ୍କ ସ୍ତ୍ରୀମାନେ ମୋର ସାଙ୍ଗ ହୋଇଗଲେ। ତାଙ୍କ ପିଲାମାନଙ୍କ ସହିତ ଆମର ପିଲାମାନେ ମିଶି ପାଠପଢ଼ିବାକୁ ସହରକୁ ଯାଆନ୍ତି– ଭଞ୍ଜବିହାର ବସ୍‌ରେ। ପିଲାମାନେ ସମସ୍ତେ ସେଇଠି ପାଠ ପଢ଼ିଲେ। କେବଳ ବଡ଼ପୁଅ ବୁଢ଼ା ବୁର୍ଲାରେ ଇଞ୍ଜିନିୟରିଙ୍ଗ୍ ପଢ଼ିବାକୁ ଯାଇଥାଏ।

ଭଞ୍ଜବିହାର – ପ୍ରଫେସରଙ୍କ ସ୍ତ୍ରୀମାନେ ମତେ ଭାରି ଭଲ ପାଉଥିଲେ। ଛୁଟିଦିନ ହେଲେ ପିଲାମାନଙ୍କୁ ନେଇ ଗୋପାଳପୁର ସମୁଦ୍ରକୁ ଆମେ ଯାଉ। ବଡ଼ ପୁଅ ବୁଢ଼ା, ଲିଲି ସୁନା ସମସ୍ତଙ୍କର ବିବାହ ଘର ସେଇଠି ହୋଇଥିଲା।

ଦିଅର ଘନ– ପୁରୀ ସଂସ୍କୃତ କଲେଜରେ ଥିଲେ। ସେ ପ୍ରାୟ ବଡ଼



Digitized by PPRACHIN, SOA

ଭାଇଙ୍କୁ ପାଖକୁ ଆସନ୍ତି । ଦୁଇ ଭାଇଙ୍କର ମିଳନ ଦେଖିଲେ ଭାରି ଖୁସି ଲାଗେ । ଗୋଟିଏ ବୋଲି ନଣନ୍ଦ ସୁଶିଳାଙ୍କ ବିବାହ ପୁରୀରେ ହୋଇଥିଲା – ସେ ମଧ୍ୟ ଭାଇଙ୍କ ପାଖକୁ ଆସନ୍ତି । କାହ୍ନୁଚରଣ ସମସ୍ତଙ୍କୁ ଭଲ ପାଆନ୍ତି । ମୋ ହାତ ରନ୍ଧା ଖାଇବାକୁ ସମସ୍ତେ ଭାରି ଭଲ ପାଉଥିଲେ । ଛାତ୍ରମାନେ ଥେସିସ୍ ଲେଖିବାକୁ ଆସନ୍ତି – ସେ ଡାକ ପକାଇବେ – ମାଉସୀଙ୍କ ରନ୍ଧା ଖାଇଯାଅ ।

କ୍ୱାଟର ଘର ବାଡ଼ିରେ ଆମେ ସୁନ୍ଦର ବଗିଚାଟିଏ କରିଥିଲୁ । ସନ୍ଧ୍ୟା ହେଲେ ଚେୟାର ପକାଇ ପିଲାମାନଙ୍କୁ ନେଇ ଆମେ ବସୁଥିଲୁ ଲନ୍‌ରେ । ପ୍ରଫେସର ଚଣ୍ଡିବାବୁଙ୍କ ସ୍ତ୍ରୀ ସୁରମା, ପ୍ରଫସର ଜେନା ବାବୁଙ୍କ ସ୍ତ୍ରୀ ବୀଣା ସମସ୍ତେ ଆସନ୍ତି । କହନ୍ତି – ନାନୀଙ୍କ ଝିଅମାନେତ ସ୍ୱର୍ଗର ପରୀ । ପୁଅ ସବୁ କେଡ଼େ ଗୁଣର । ଘର ବାଡ଼ି-ବଗିଚା କି ସୁନ୍ଦର କରିଛନ୍ତି । କେନ୍ତେବେଳେ ଆପଣଙ୍କୁ ବେଳ ହେଉଛି ? ସମସ୍ତେ ଆମକୁ ଭଲ ପାଆନ୍ତି । ମୋର ଭଉଣୀ ନ ଥିବାରୁ ମୁଁ ପ୍ରଫେସର ଚିନ୍ତାମଣି ବାବୁଙ୍କ ସ୍ତ୍ରୀ ସ୍ନେହକୁ ଭଉଣୀ କରି ନେଲି । ସେ ମତେ ଭାରି ଭଲପାଏ । ମୁଁ ମଧ୍ୟ । ପିଲାମାନେ ସ୍ନେହ ମାଉସୀ ବୋଲି ଆଦର କରନ୍ତି । ସେଦିନଗୁଡ଼ିକ ସବୁଠାରୁ ମୋ ପାଇଁ ଆନନ୍ଦର ଦିନ ଥିଲା । ରିଟାୟାର୍ଡ ପରେ ଆମେସବୁ ଭୁବନେଶ୍ୱରର ନୂଆ ଘରକୁ ଆସିଲୁ ।

X X X

ସେଦିନର କଥା – ବାହାରେ ବର୍ଷାର ଅବିରାମ ଧାରା କାହ୍ନୁଚରଣ ବାଲକୋନି ଉପରେ ଗୋଟିଏ ଚେୟାର ପକାଇ ବସିଛନ୍ତି – ହଠାତ୍ ଗାଁରୁ ଖବର ଆସିଲା ବାପାଙ୍କ ଦେହ ଖରାପ । ଆମେ ଗାଁକୁ ଯାଇ ବାପାଙ୍କୁ ପାଖକୁ ନେଇ ଆସିଲୁ । ଡାକ୍ତର ଦେଖାଇଲୁ ତିନି ଚାରିମାସ ପାଖରେ ରଖିଲୁ । ଆସ୍ତେ ଆସ୍ତେ ଦେହ ଭଲ ହେବାକୁ ଲାଗିଲା । ଦେହ ଭଲ ହେବାରୁ କାହ୍ନୁଚରଣଙ୍କ ବାପା (ଶ୍ୱଶୁର) ବେସ୍ତ ହେଲେ ଗାଁକୁ ଯିବାକୁ । ତାଙ୍କ ଘରର ଇଷ୍ଟ ଦେବୀ ମା' ଦୁର୍ଗା । ଠାକୁରାଣୀଙ୍କର ପୂଜାପୂଜିରେ ଅସୁବିଧା ହଉଥିବ ବୋଲି ।

ସେଥିପାଇଁ ସେ ଉଛନ୍ନ ହେଲେ ଗାଁକୁ ଫେରି ଯିବା ପାଇଁ । କାହ୍ନୁଚରଣ ଗାଡ଼ିରେ ବାପାଙ୍କୁ ନେଇ ଗାଁରେ ଛାଡ଼ି ଆସିଲେ ।

ଦୁଇ ମାସ ପରେ ଖବର ଆସିଲା ବାପାଙ୍କ ଦେହ ବହୁତ ଖରାପ ଶୀଘ୍ର ଆସ ?



Digitized by PPRACHIN, SOA

କାହ୍ନୁଚରଣ କଟକ ଯାଇ ଔଷଧପତ୍ର ନେଇ ଗାଁକୁ ଗଲାବେଳକୁ ବାପା ତାଙ୍କର ଚାଲି ଯାଇଥିଲେ। ସେ ସବୁକାର୍ଯ୍ୟ ସାରି ପିଲାମାନଙ୍କୁ ନେଇ ଗାଁକୁ ଗଲେ। ସେଠାରେ ଶୁଦ୍ଧିକାମ ସାରି ଫେରିଲେ।

ତାଙ୍କର ବାପାଙ୍କ ପାଇଁ ମନଦୁଃଖ। ସର୍ବଦା ମୁହଁ ଶୁଖାଇ ବସିଲେ। କାହ୍ନୁଚରଣଙ୍କର ବାପାଙ୍କ କଥା ମନେ ପଡ଼େ ଗୋଟି ଗୋଟି ହୋଇ ଭୁବନେଶ୍ୱରରେ ଘର କଲାବେଳେ। ବାପା ତାଙ୍କର ଶୁଭ ଦେଇଥିଲେ। ଘର ପ୍ରତିଷ୍ଠା କରିଥିଲେ। ଯେତେ ଦୁଃଖ ଥିଲେ ସାହାସ ଦଉଥିଲେ। ତାଙ୍କର ପଇସା ନଥିଲା ସତ। କିନ୍ତୁ ମନର ବଳ ବହୁତ। ବିପଦରେ ଅଧିର ନ ହବା ପାଇଁ ଆମକୁ ସବୁବେଳେ କହୁଥିଲେ।

କାହ୍ନୁଚରଣ ବାପା, ମା'ଙ୍କୁ ଭାରତର ବହୁତ ତୀର୍ଥ ସ୍ଥାନ ବୁଲାଇଥିଲେ। ଯେଉଁଦିନ ବାପା ତାଙ୍କର ଦିଲ୍ଲୀଗଲେ ରାଷ୍ଟ୍ରପତି ପୁରସ୍କାର ପାଇବା ପାଇଁ - ସେ ଆନନ୍ଦରେ କାନ୍ଦି ପକାଇଲେ। ସେ ଜାଣିଛନ୍ତି ବାପାଙ୍କର ଦୁଃଖ।

ମୁଁ ସମୟ ସମୟରେ ବାପଘର, ଶାଶୁଘର ଜଞ୍ଜାଳରେ ଘାରି ହୋଇପଡ଼େ। କିନ୍ତୁ ମୋତେ ଅଧୈର୍ଯ୍ୟ ହବା କେହି ଦେଖି ନାହାନ୍ତି।

ବ୍ରହ୍ମପୁରରେ ରହିବା ପରେ ତୃତୀୟ ଝିଅ ବିଭାଘର କଲେ। ବଡ଼ ପୁଅର ବିଭାଘର କଲେ। ଏହିପରି ନଅ ଦଶ ବର୍ଷ ପରେ କାହ୍ନୁଚରଣ ଅବସର ନେଇ ଭୁବନେଶ୍ୱର ନିଜ ଘରକୁ ଫେରିଲେ। ସାନ ଝିଅର ଦୁଇ ପୁଅଙ୍କର ବିଭାଘର ହେଲା ଭୁବନେଶ୍ୱର ନିଜ ଘରେ। ଚାରି ଯୋଇଁ ବଡ଼ ବଡ଼ ଚାକିରୀ କରନ୍ତି। ସେ ଆନନ୍ଦରେ ଫାଟି ପଡ଼ନ୍ତି। ସେ ଯାହା ଚାହୁଁ ଥିଲେ ଜଗନ୍ନାଥ ତାଙ୍କୁ ସେହିପରି ଯୋଇଁ ଦେଇଛନ୍ତି। ବଡ଼ ଯୋଇଁ ଶଚିଦାନନ୍ଦ ମିଶ୍ର ଇଲେକ୍ଟ୍ରିକାଲ୍ ଇଞ୍ଜିନିଅର୍, Sailରେ ଡାଇରେକ୍ଟର, ଦ୍ୱିତୀୟ ଯୋଇଁ ଡ. ରାଜକିଶୋର ଷଡ଼ଙ୍ଗୀ ସର୍ଜରୀରେ ପଫେସର, ତୃତୀୟ ଯୋଇଁ ଶରତ ଚନ୍ଦ୍ର ଶତପଥି ଇଂଲିଶ୍ ପ୍ରଫେସର, ଚତୁର୍ଥ ଯୋଇଁ ପ୍ରଦ୍ୟୁମ୍ନ କୁମାର ମିଶ୍ର, ନାବାର୍ଡରେ ଡି.ଜି.ଏମ୍ ଅଫିସର।

ବଡ଼ପୁଅ ଦେବପ୍ରସାଦ ମିଶ୍ର, ଇଞ୍ଜିନିଅର, ସ୍ୱଞ୍ଜ ଆଇରନ୍ କମ୍ପାନୀରେ ଏ.ଜି.ଏମ୍, । ମଝିଆ ପୁଅ ଜଗନ୍ନାଥ ପ୍ରସାଦ ୟୁକୋ ବ୍ୟାଙ୍କରେ ମ୍ୟାନେଜର, ସାନପୁଅ ଶକ୍ତି ପ୍ରସାଦ ମିଶ୍ର, ସେବା ପେପର୍ ମିଲ୍‌ରେ ଅଫିସର। ଝିଅମାନଙ୍କର ଓ ପୁଅମାନଙ୍କ ଦାୟିତ୍ୱ ସରିଲା ପରେ ନିଶ୍ଚିନ୍ତ ହେଲେ କାହ୍ନୁଚରଣ।



Digitized by PPRACHIN, SOA

କାହ୍ନୁଚରଣ ସର୍ବଦା ଚଞ୍ଚଳ ତାଙ୍କୁ ବସିବାକୁ ଭଲ ଲାଗେ ନାହିଁ। ସେ ଅବସର ପରେ ଓଡ଼ିଶାର ଭାଷା ସଂସ୍କୃତିର ଉନ୍ନତି ପାଇଁ, ଓଡ଼ିଶା ସଂସ୍କୃତି ପରିଷଦ ଗଠନ କରି ସେ କାର୍ଯ୍ୟରେ ସର୍ବଦା ବ୍ୟସ୍ତ ରୁହନ୍ତି।

ପ୍ରତ୍ୟେକ ବର୍ଷ ବଡ଼ ବଡ଼ ପଣ୍ଡିତ ଓ ଜ୍ଞାନୀ ଲୋକଙ୍କୁ ଡାକି ଛାତ୍ରମାନଙ୍କ ସହଯୋଗରେ ତିନିଦିନ ବହୁଆଡ଼ମ୍ବର ସେମିନାର ଅନୁଷ୍ଠିତ କରାନ୍ତି। ଦି କଲ୍‌ଟ୍ ଅଫ ଜଗନ୍ନାଥ ପୁସ୍ତକରେ ସେ ଡକ୍ଟରେଟ୍ ପାଇଲେ । ଏବେ ଏହା ସାରା ଦେଶ ବିଦେଶରେ ପ୍ରଚଳିତ ହେଉଛି ଏବଂ ସେମିନାରରେ ଭାଗବତ, ରାମାୟଣ, ଜୟଦେବ, ଏହିପରି କେତେ ବହି ଲେଖି ଉନ୍ମୋଚନ କରିଛନ୍ତି।

ଝିଅ ପୁଅ ମଝିରେ ମଝିରେ ଆସନ୍ତି ବାପ ମା'ଙ୍କୁ ଦେଖା କରିବାକୁ। ଝିଅମାନଙ୍କର ଝିଅ ପୁଅ ମଧ୍ୟ ଉଚ୍ଚ ଶିକ୍ଷିତ। ସେମାନେ ରହନ୍ତି ବିଦେଶରେ।

ବଡ଼ ପୁଅ ବିଦେଶରେ ଇଞ୍ଜିନିୟର୍ ଥିଲା। ସେ ଓଡ଼ିଶାରେ ଚାକିରୀ ପାଇବାରୁ ବାହାରୁ ପଳେଇ ଆସିଲା। ମଝିଆ ପୁଅ କାବୁଲି ବାହାରେ ଥାଏ। ସାନପୁଅ ଶକ୍ତି ଜୟପୁରରେ। ବଡ଼ପୁଅ ବାହାରୁ ଆସିଲାରୁ ଚାକିରୀ ପାଇ ଭୁବନେଶ୍ୱରରେ ରହିଲା। ବଡ଼ ପୁଅ ବୋହୁ ଘରେ ରହିଲାରୁ କାହ୍ନୁଚରଣ ଟିକେ ଆଶ୍ୱସ୍ତ ହେଲେ। ଭାଇମାନେ ଭୁବନେଶ୍ୱରରେ ଚାକିରୀ କରିଛନ୍ତି। ସେମାନେ ମଝିରେ ମଝିରେ ଆସନ୍ତି। ସେମାନେ ନ ଆସିଲେ କାହ୍ନୁଚରଣ ଫୋନ୍ କରିବେ ଆସିବାକୁ। ତାଙ୍କୁ ଏକା ଭଲ ଲାଗେନି। ପିଲାଦିନୁ ସେ ବହୁ କୁଟୁମ୍ବରେ ଚଳି ଆସିଛନ୍ତି। ବଡ଼ ପୁଅର ଗୋଟିଏ ଝିଅ - ମଝିଆ ପୁଅର ଗୋଟିଏ ବୋଲି ଝିଅ ଓ ସାନର ପୁଅଟିଏ ଓ ଝିଅଟିଏ ହୋଇଥାନ୍ତି। ଝିଅ ହେଲେ - ଜ୍ୟୋର୍ତିମୟୀ - ଜ୍ୟୋସ୍ନାମୟୀ, ଲିଲି ଓ ଦିପ୍ତୀ।

କାହ୍ନୁଚରଣ ମଝିରେ ମଝିରେ ଗାଁକୁ ଯାଆନ୍ତି। ସେ ଗାଁର ଜମିବାଡ଼ି କଥା କିଛି ଜାଣନ୍ତି ନାହିଁ। କାରଣ ଯେତେବେଳେ ତାଙ୍କ ବାପା ଥିଲେ ସେ ସବୁ ବୁଝୁଥିଲେ। ବାପା ଗଲାପରେ ଭାଇମାନେ ବୁଝନ୍ତି। ସେ ମଝିରେ ମଝିରେ ଗାଁକୁ ଗଲେ ଭାଇମାନେ ଯାହା କହିବେ ହଁ, କରି ପଳାଇ ଆସିବେ।

ଘର ଭିତରେ କାହାରି ଭିତରେ ନ ପଡ଼ିବାରୁ ଭାଇମାନଙ୍କ ଭିତରେ ଭିନ୍ନେ ହେଲେ ସମସ୍ତେ। ସେ ତାଙ୍କ ଗାଁ ଜାଗାକୁ ଭାଇ ପୁତୁରାକୁ ଦବା ଲାଗି ନିଷ୍ପତ୍ତି ନେଲେ।



Digitized by PPRACHIN, SOA

ମୁଁ ଶୁଣି କହିଲି ପିତୃ ଅର୍ଜିତ ସମ୍ପତ୍ତି କାହାକୁ ଦିଅନ୍ତି ନି ? ଶ୍ୱଶୁର କହିଛନ୍ତି ତାଙ୍କ ଜାଗାରେ ଠାକୁରାଣୀଙ୍କ ଘର ହେବ ଏବଂ ସେଠାରେ ପୂଜାପୂଜି ହେବ।

କାହ୍ନୁଚରଣ ନଶୁଣି ତାଙ୍କ ଜାଗାକୁ ଭାଇ ପୁତୁରାକୁ ଦେଇ ଦେଲେ ଘର କରିବାକୁ। ଏ ସବୁ କଥା ଜାଣିଲା ପରେ ମୋର ମନ ବହୁତ ଦୁଃଖ ହେଲା। କାରଣ ଶ୍ୱଶୁର ଯାହା କହିଥିଲେ ତାଙ୍କ କଥା ରହିଲା ନାହିଁ।

କାହ୍ନୁଚରଣଙ୍କର ଛନ୍ଦ, କପଟ ହୃଦୟରେ କିଛି ନଥିଲା ସେ ମୋତେ ବୁଝାଇ ଦେଇ କହିଲେ, ଆମେତ ବାହାରେ ରହିଲେ, ଅଧିକ ଜାଗାଟିକେ ହେଲେ ସେମାନେ ଭଲରେ ଘର କରି ଚଳିବେ। ଆମେ ଯେତେବେଳେ ଗାଁକୁ ଯିବା ଘରେ ବସି ଗଣ୍ଡେ ଖାଇବା। ମୁଁ ଯାହା କରିଛି ଠିକ୍ କରିଛି ?

ବଡ଼ ଭାଇ, ଭାଉଜ ଚାଲି ଗଲାପରେ ତାଙ୍କ ପୁଅ ଝିଅଙ୍କର ଦାୟିତ୍ୱ ସେ ସବୁ ବୁଝୁଥିଲେ। ସେମାନେ ତାଙ୍କ ବାପା ମା'ଙ୍କୁ ଯେତିକି ଭଲ ନ ପାଉଥିଲେ, କକେଇ, ଖୁଡ଼ିଙ୍କୁ ତା'ଠାରୁ ବେଶୀ ନିଜର ଭାବୁଥିଲେ। ପିଲାଦିନୁ ସେମାନେ କକେଇ, ଖୁଡ଼ିଙ୍କୁ ନନା, ବୋଉ ବୋଲି ଡାକନ୍ତି। ମୁଁ ଝିଅ, ଝିଆରି ଭିତରେ ଅଲଗା ଭାବ କେବେ ଦେଖିନାହିଁ। ଝିଆରୀ ପୁତୁରାଙ୍କୁ ବାହାଘର କରିଛି। ତାଙ୍କର ସୁବିଧା ଅଭାବ ଅସୁବିଧା ସାଧ ମୁତାବକ ବୁଝିଛି। ଆଜି ସମସ୍ତେ ଯୋଗ୍ୟ।

କାହ୍ନୁଚରଣ ନିଜର ଭାଇ ପୁତୁରା ସମସ୍ତଙ୍କୁ ମଣିଷ କରିଛନ୍ତି। କାହାର ଅଭାବ ଅସୁବିଧା ତା' ମଧ୍ୟ ବୁଝିଛନ୍ତି। ସମସ୍ତେ ବାହାରେ। କିନ୍ତୁ ପର୍ବ ପର୍ବାଣି ଓ ନ୍ୟାୟ ନିମିତ୍ତରେ ସମସ୍ତେ ଏକାଠି ହୁଅନ୍ତି ? ସମୟ କାହାକୁ ଅପେକ୍ଷା କରେନି। ମୁଁ ଦିନେ କହିଲି ଆମର ବୟସ ହେଲାଣି। ଆଉ ଗାଁର ଭଲମନ୍ଦ ଶୁଣିବାକୁ ଭଲ ଲାଗୁନାହିଁ। ସେ କିଛି ନ କହି ଚୁପ୍ ହୋଇ ରହିଲେ।।

କାହ୍ନୁଚରଣଙ୍କର ବାପାଙ୍କ ନାଁରେ ଗୋଟେ ଜମିଥିଲା। ସେ କହିଥିଲେ ମୋର ପୁଅ ପୁତୁରା ସମାନ। ଯେତେକ ଜମି ବିକ୍ରି ହେବ ସମାନ ଭାବରେ ଟଙ୍କା ବାଣ୍ଟି ନବ।

ମୋର ଶ୍ୱଶୁର ଗଲାପରେ ବହୁତ ଦିନ ପର୍ଯ୍ୟନ୍ତ ସେ ଜମି ପଡ଼ି ରହିଲା। ଜମି ବିକିବା ନାଁ କେହି ଧରିଲେନି।



Digitized by PPRACHIN, SOA

ଶେଷରେ ଜମି ବିକ୍ରି ହବା ଲାଗି ଠିକ୍ ହେଲା। କାହ୍ନୁଚରଣ ଗାଁକୁ ଗଲେ। ମୁଁ ତାଙ୍କୁ କହିଲି ଜମି ବିକ୍ରି କଲେ ଯାହା ଟଙ୍କା ହେବ ତୁମେ ଏଗାର ଭାଇ ଏଗାର ବାଣ୍ଟ କରିବ। ସମସ୍ତେ ଜମିର ଟଙ୍କା ସମାନ ଭାବରେ ପାଇବେ। ସମସ୍ତେ ୨୦୦୦ ଟଙ୍କା ଲେଖା ଠାକୁରାଣୀଙ୍କୁ ଦେବ। ଏବଂ ତୁମ ଭଉଣୀକୁ ଡାକି କିଛି ଦବ ନଚେତ୍ ସେ ମନଦୁଃଖ କରିବେ। କାହ୍ନୁଚରଣ ଯେତେ କହିଲେ ଟଙ୍କା ଦବା କଥା କେହି ଶୁଣିଲେ ନାହିଁ। କିଛି କାହାକୁ ନ କହି ଜମି ବିକି ସେ ଟଙ୍କା ସମସ୍ତଙ୍କୁ ଦେଇ ଘରକୁ ଫେରିଲେ। ପଚାରିଲି ଭଉଣୀକୁ ଟଙ୍କା ଦେଲ। ନାଁ ଭୁଲିଗଲି। ନାଁ ତୁମେ ଠିକ୍ କଲନି ? ତାଙ୍କୁ ଡାକିଥାନ୍ତ ସେ ଶୁଣିଲେ ମନ ଦୁଃଖ କରିବେ ?

କିଛିଦିନ ପରେ ହଠାତ୍ ପୁତୁରାର ବିଭାଘର ହେଲା। କାହ୍ନୁଚରଣ ଗାଁକୁ ଗଲେ। ଭଉଣୀକୁ ଟଙ୍କା ଦବା କଥା। ସବୁ ଭାଇମାନଙ୍କୁ କହିଲେ କେହି ଶୁଣିଲେ ନାହିଁ। ଶେଷରେ ଭଉଣୀକୁ ବୁଝାବୁଝି କରି ନିଜେ କହି ଟ. ୫୦୦୦ଙ୍କା ଆଣି ଦେଲେ।

କାହ୍ନୁଚରଣଙ୍କର ବୟସ ହେବାରୁ ଦେହ ଭଲ ରହିଲା ନାହିଁ। ସେ ନିଜେ ଦେହକୁ ବହୁତ ଯତ୍ନ ନିଅନ୍ତି। ଠିକ୍ ସମୟରେ ଶୋଇବେ, ଠିକ୍ ସମୟରେ ଖାଇବେ। ଟିକେ ଏପଟ ସେପଟ ହେବ ନାହିଁ। ସେ ମୋ ଲାଗି ବହୁତ ବ୍ୟସ୍ତ ହୁଅନ୍ତି। କାରଣ ମୁଁ ଚିର ରୋଗଣୀ।

କାହ୍ନୁଚରଣ ମୋତେ କହିବେ ତୁମପରି ତୁମ ଝିଅ ବୋହୁ କାମ କରି ପାରିବେ ନାହିଁ। ସ୍ୱାମୀଙ୍କ କଥା ଶୁଣି ମୁଁ ମନେ ମନେ ଭାବିଲି ମୁଁ ଶାଶୁଘରକୁ ଆସିଲା ପରେ ବହୁକୁଟୁମ୍ବିରେ ରହି କେତେ କେତେ କାମ ମୁଁ ନ କରିଛି। କୁଅରୁ ପାଣି କାଢ଼ିବାଠାରୁ ଧାନ ଉସେଇଁ ରାନ୍ଧିବା ପର୍ଯ୍ୟନ୍ତ ସବୁ କାମ ଶାଶୁ ଘରେ କରିଛି ?

ଦିନେ ବାପା ମୋ ଶାଶୁ ଘରକୁ ଆସିଥିଲେ। ସେ ଦେଖିଲେ ମୁଁ ବଡ଼ ଗରାରେ କୁଅରୁ ପାଣି କାଢୁଛି। ମୋତେ ଡାକି କହିଲେ, ମା'ରେ ଏଡ଼େ ବଡ଼ ଗରାରେ ପାଣି କାଢୁଛୁ, କୁଅରେ ପଡ଼ିଯିବୁ ମୁଁ ତୋ ପାଇଁ ଛୋଟଗରା ପଠାଇ ଦେବି। ବାପା ଦେଇଥିବା ଗରା ଏ ପର୍ଯ୍ୟନ୍ତ ମୋ ପାଖରେ ଅଛି।



Digitized by PPRACHIN, SOA

କାହ୍ନୁଚରଣ ବସି ରହିବା କେବେ କେହି ଦେଖିନାହାନ୍ତି । ଯେତେ କାମ ପଡୁ ଖରାରେ ଯାଇ ବୁଲୁଥିବେ । ମୁଁ ଯେତେ କହିବି ରିକ୍ସାରେ ଯାଅ ସେ ଶୁଣିବେ ନାହିଁ । ଥଟ୍ଟାରେ ମୋତେ କହିବେ । ତୁମର ପଇସା ଅଛି ରିକ୍ସାରେ, ଅଟୋରେ ମନ୍ଦିର ଯିବ । କୋଡ଼ିଏ, ତିରିଶ ଟଙ୍କା ଖର୍ଚ୍ଚ କରି । ମୁଁ ଟାଉନ୍ ବସରେ ଯାଉଛି ଗୋଟାଏ ଟଙ୍କା ଖର୍ଚ୍ଚ କରି ।

ମୁଁ ଏସବୁ ଶୁଣି ବିରକ୍ତ ହୋଇ କହିଲ, ପଇସା ରଖି କ'ଣ କରିବ ଖର୍ଚ୍ଚ କରୁନା । ଏତେ କଷ୍ଟ କାହିଁକି କରୁଛ ଆମେ ମଲାବେଳେ ଆମ ମୁଣ୍ଡ ଉପରେ କିଏ ଦେଇଦେବ ?

କାହ୍ନୁଚରଣ ହସି ଦେଇ ମୋତେ କହିଲେ ତୁମେ ମୋ ପାଇଁ ଏତେ ଚିନ୍ତା କାହିଁକି କରୁଛ । ମୁଁ ବ୍ୟସ୍ତ ହୋଇ କହେ ଏତେ ଖରାରେ ବୁଲୁଛ, ମୋତେ ବଡ଼ କଷ୍ଟ ଲାଗୁଛି । ଦେହ ଖରାପ ହେଲେ କିଏ ଦୁଃଖ ପାଇବ ।

ସେ କହିବେ ଅନୁଷ୍ଠାନଟି କରିଛି ତା'ରି ପାଇଁ ଲାଗିଛି । ସରକାର ଯାଗା ଖଣ୍ଡିଏ ଦେଲେ ଘର ଖଣ୍ଡିଏ ହବ ? ନହେଲେ ମୋତେ କ'ଣ ବୁଲିବାକୁ ଭଲ ଲାଗୁଛି ?

+ + +

ପାରଳାଖେମୁଣ୍ଡିରେ ମିଟିଂ ପଡ଼ିଲା । କାହ୍ନୁଚରଣ ଗଲେ ପାରଳା ଖେମୁଣ୍ଡି । ସେଠାରୁ ଆସି ଭୀଷଣ ଜ୍ୱରରେ ପଡ଼ିଲେ ଜ୍ୱର ଜମା ଛାଡ଼ିଲା ନାହିଁ । ଦୁର୍ବଳ, ହୋଇ ପଡ଼ିଲେ । ସବୁ ପରୀକ୍ଷା କରାଗଲା । ଦେଖିଲାବେଳକୁ ମେଲେରିଆ ଜ୍ୱର । ପୁଅ, ଝିଅ ଯୋଗୁଁ ସବୁ ଡାକ୍ତର ଦେଖାଇ ଔଷଧ ପତ୍ର ଖାଇବାରୁ ଜ୍ୱର ଛାଡ଼ିଲା କିନ୍ତୁ ସେ ଦୁର୍ବଳ ହୋଇ ପଡ଼ିଲେ । କିଛିଦିନ ପରେ ମଝିଆ ପୁଅ କାବୁଲା ଟ୍ରାନ୍ସଫର୍ ହୋଇ ଆସିଲା ପାଖକୁ । ସମସ୍ତେ ରହିଲେ ପାଖରେ । କେବଳ ସାନପୁଅ ଶକ୍ତି ଓ ସାନଝିଅ ମୁନା (ଦିପ୍ତୀ) ବାହାରେ ରହିଲେ ।

ମଝିଆ ଭାଇ ଦୁର୍ଗାପ୍ରସାଦ ଚାକିରୀ କରିଥାଏ ବମ୍ବେରେ । ସାନଭାଇ ଗୌରୀ ପ୍ରସାଦ ବ୍ୟାଙ୍କ ମ୍ୟାନେଜର ଥାଏ ହାଇଦ୍ରାବାଦରେ । ବୋଉ ଥାଏ ବଡ଼ ଭାଇନା ହର ପ୍ରସନ୍ନଙ୍କ ପାଖରେ । ହଠାତ୍ ବୋଉର ଦେହ ବର୍ଷେ ହେଲା ବହୁତ ଖରାପ ହେଲା । ହାଇଦ୍ରାବାଦ ବୋଉକୁ ନେଇଗଲେ ଦେହ ଭଲ



Digitized by PPRACHIN, SOA

କରିବାକୁ। ବୋଉର ଦେହ ବେଶୀ ଖରାପ ହେବା ଶୁଣି ମୁଁ ମୋର ସ୍ୱାମୀ ଗଲୁ ହାଇଦ୍ରାବାଦ। ବଡ଼ଝିଅ ଘର ଜଗି ରହିଲା। ସେଠାରୁ ଆସିବାର ୧୦/୧୨ ଦିନ ପରେ ବୋଉ ଚାଲିଗଲା। ଭାଇମାନେ ହାଇଦ୍ରାବାଦରେ ବୋଉ କାମ ସାରି ଭୁବନେଶ୍ୱରରେ ଶୁଦ୍ଧିକାମ ଭଲରେ ସମାପ୍ତ କଲେ। ବୋଉ ଗଲାପରେ ମୋର ମନ ପୁରା ଭାଙ୍ଗିଗଲା।

କାହ୍ନୁଚରଣ ପ୍ରତିଦିନ ଭୋରୁ ଉଠି ଠାକୁରଙ୍କ ପାଇଁ ଫୁଲ ତୋଳିବାକୁ ଯିବେ। ସେଠାରୁ ନିଜର ନିତ୍ୟକର୍ମ ସାରି ଠାକୁର ଘରେ ପୂଜା କରି ଜଳଖିଆ ଖାଇ ଟିଭି ଦେଖିବେ। ନଚେତ୍ ଅଫିସ୍ କାମ ଲେଖା ଲେଖି କରିବେ।

କାହ୍ନୁଚରଣ ବଗିଚାକୁ ବହୁତ ଭଲ ପାଆନ୍ତି। ସବୁ ଫଳ ଗଛଠାରୁ ଫୁଲ ଗଛ ପର୍ଯ୍ୟନ୍ତ ଲଗାଇଛନ୍ତି। ବଗିଚା ତାଙ୍କର ପ୍ରିୟ। ଆମେ ଦୁହେଁ ବଗିଚା କାମ କରିବାକୁ ଭଲ ପାଉ।

ଚାରିଟା ବାଜିଲେ ଗୋଟିକ ଉପରେ ଦୁଇଟା ଚେୟାର ପକାଇ ମୋତେ ଡାକ ପକାଇବେ। ମୁଁ ଆସି ପାଖରେ ବସିଲେ ବହୁତ ଦୁଃଖସୁଖ ହେବେ।

ଦିନେ ମୁଁ ତାଙ୍କୁ କହିଲି ଜ୍ୟୋତିଷ କହିଛି ମୁଁ ଆଗଯିବି। ନୂଆ ବୋଉ ଗଲେ। ଭାଇନା ତାଙ୍କ ପିଲାମାନଙ୍କ କଥା ସବୁ ବୁଝୁଛନ୍ତି। ମୁଁ ଗଲେ ତୁମେ ସେମିତି ବୁଝିବ? ସବୁଦିନ ଭଳି ସେ ହସି କହିଲେ ଦେଖାଯାଉ କିଏ ଆଗ ଯାଉଛି।

କୁନି ଟୁନିକୁ ମୁଁ ଭାଇ ବୋଲି ଭାବେନି କାରଣ ସେମାନେ ମୋଠାରୁ ବହୁତ ସାନ। ମୋ ବାହାଘର ବେଳକୁ କୁନି ଦଶ ମାସର। ଟୁନି ମୋ ବଡ଼ ଝିଅଠାରୁ ଦେଢ଼ବର୍ଷ ସାନ। ବଡ଼ଭାଇନା ମୋଠାରୁ ତିନିବର୍ଷ ବଡ଼। କୁନି ଯେତେବେଳେ କଲିକତାର ଯାଦବପୁରରେ ପଢ଼ି ଇଞ୍ଜିନିୟରିଂରେ ଫାଷ୍ଟକ୍ଲାସ୍‌ରେ ପାସ୍ କଲା। – ଶୁଣି ମୋର ମନ ବହୁତ ଖୁସି ହୋଇଗଲା। କିନ୍ତୁ ମନ ମୋର ଦୁଃଖରେ ଆଉଟୁ ପାଉଟୁ ହୋଇଗଲା। ଭାଇ ମୋର ଲୋନ୍ କରି ଇଞ୍ଜିନିୟରିଂ ପଢ଼ି ଫାଷ୍ଟକ୍ଲାସ ପାଇ ପାସ୍ କଲା। ସେତେବେଳେ ବାପା ମୋର ଚାଲିଯାଇଥିଲେ। ବାପାଙ୍କ କଥା ମନେ ପକାଇ କାନ୍ଦି ପକାଇଲି। ସେତେବେଳେ ଆମେ ରେଭେନ୍ସା କଲେଜରେ ଥାଉ।



Digitized by PPRACHIN, SOA

ମୋ ଦେହ ମଝିରେ ବହୁତ ଖରାପ ହୁଏ। କୁନି ସେଇବର୍ଷ ଯାଦବପୁର ଇଞ୍ଜିନିୟରିଂ କଲେଜରେ ଡିଗ୍ରି ପାଇବ।

କୁନି ଓ ମୋର ମଳାଶୁରଙ୍କ ପୁଅ ଦିଅର ଉମାକାନ୍ତ ରଥ କାଳିଘାଟରେ ଗୋଟେ ଘରଭଡ଼ା ନେଇ ରହୁଥାନ୍ତି। ମୋ ଦେହ ଖରାପ ଶୁଣି ସେ ଲେଖିଲା ଚିଠି ତା ଭିଣେଇଙ୍କୁ । କଲିକତାରେ ଜଣେ ହୋମିଓପାଥି ଡାକ୍ତର ଅଛନ୍ତି, କି. ଆଣ୍ଡ କୋ ହସ୍‌ପିଟାଲ୍‌ରେ । ସେଠି ଦେହ ଦେଖାଇବା ନାନୀର। ମୁଁ ଏବର୍ଷ ଯାଦବପୁର ଇଞ୍ଜିନିୟରିଂ କଲେଜରୁ ଡିଗ୍ରୀ ପାଇବି ତୁମେ ନାନୀ ଦେଖିବ।

କାହ୍ନୁଚରଣ ଚିଠି ପାଇ ମୋତେ କଲିକତା ନେଇକରି ଗଲେ ସେଠି ଡାକ୍ତର ଦେଖାଇ ରହିଲି ଆଠ ଦଶଦିନ। ଯେଉଁଦିନ କୁନି ଡିଗ୍ରି ପାଇବ ସେ ଦିନ ମୋତେ କହିଲା ନାନୀ ତୁ ଆସିଛୁ ମୁଁ ଡିଗ୍ରି ପାଇବି ତୁ ଭାଇନା ଦେଖିବ ସେଥିପାଇଁ ମୋ ମନ ବଡ଼ ଖୁସି।

କୁନି ଆମକୁ ସାଙ୍ଗରେ ନେଇଗଲା ଯାଦବପୁର। ତା ଡିଗ୍ରୀ ପାଇବା ଦେଖି ମୋର ଆନନ୍ଦରେ ଆଖିରୁ ଲୁହ ଗଡ଼ିପଡ଼ିଲା। ମନେ ମନେ ଭାବିଲି ବାପା ଥିଲେ କେତେ ଖୁସି ହଉଥାନ୍ତେ।

କଲିକତାରେ ସେ ଓ ରମାକାନ୍ତ ମୋତେ ଚାରିଆଡ଼େ ବୁଲେଇ ଦେଖାଇଲେ। କାହ୍ନୁଚରଣ ଯେଉଁଠି ରହି ପଢୁଥିଲେ ଏବଂ ଟିଉସନ୍ କରୁଥିଲେ ବଙ୍ଗାଳିବାଡ଼ି ମାନଙ୍କରେ ତାଙ୍କ ଘରମାନଙ୍କୁ ନେଇକରି ଗଲେ ମୋତେ କାହ୍ନୁଚରଣ। ସେମାନେ ମୋତେ ଦେଖି ବହୁତ ଖୁସି ହୋଇଗଲେ। ଖାଇବାକୁ ଦେଲେ। କହିଲେ ଦୁଃଖରେ ମୋତେ ବୋହୁ ଦି କାହ୍ନୁ ଦାଦା କି କଷ୍ଟରେ ପାଠପଢ଼ିଛେ। କକେଇ ଖୁଡ଼ି କି ହଲ ବହୁତ କଷ୍ଟ ଦେଇଛ। ମୁଁ ଶୁଣି ମନଟା ଦୁଃଖ ହୋଇଗଲା। କଲିକତାରେ ଗାଁର ଖୁଡୁତାଶୁର ସବୁଥିଲେ ମୋତେ ଡାକି ଖୋଇ ଲୁଗାପଟା ପିନ୍ଧାଇଲେ।

ଏହିପରି ଡାକ୍ତର ଦେଖାଇ କଲିକତାରେ ୧୦/୧୫ ଦିନ ରହି କଟକ ଫେରିଲୁ।

ତାପରେ କୁନି ଡେରାଡୁନ୍‌ରେ କି ବମ୍ବେରେ ଏତେ ବର୍ଷ କଥା ମୋର ମନେପଡୁନି। ବହୁତ ଔଷଧ ଖାଇଲି ଦେହ ମୋର ଭଲ ହେଲାନି।



Digitized by PPRACHIN, SOA

ହର ପ୍ରସନ୍ନ ଭାଇନା ରାଉରକେଲାରୁ କଲିକତା ବଦଳି ହୋଇ ଆସିଲେ । ମୋତେ ଡକାଇଲେ ଡ. ବିଧାନରାୟଙ୍କୁ ଦେହ ଦେଖାଇବାକୁ । କାହ୍ନୁଚରଣ ମୋତେ ପିଲାଙ୍କୁ ନେଇକରି ଆସିଲେ କଲିକତା ମୋ ଦେହ ଡାକ୍ତର ଦେଖାଇବାକୁ । ଡ. ଶରତ ଚନ୍ଦ୍ର ମିଶ୍ର ମୋ ଭିଣେଇ ସେ ମଧ୍ୟ ଆସିଲେ । କଲିକତାରେ ଡ. ବିଧାନରାୟଙ୍କ ପାଖକୁ ମୋ ଭିଣେଇ ନେଇକରି ଗଲେ । ସେ ଦେହ ଦେଖି ଔଷଧ ପତ୍ର ଦେଲେ ଔଷଧ ଖାଇ ଦେହଟିକେ ଭଲ ଆଡ଼କୁ ଆସିଲା ମୋର ।

ଭିଣେଇ କାହ୍ନୁଚରଣ ପଳେଇ ଆସିଲେ କଟକକୁ । ମୁଁ ପିଲା - ଭାଇନାଙ୍କ ପାଖରେ ରହିଲୁ । ଦେହ ଟିକେ ଭଲ ହେଲାରୁ ମୁଁ ଘରକୁ ଆସିଲି । ବିଧାନରାୟ ଯେଉଁ ଔଷଧ ନିଜେ ତିଆରି କରି ଦଉଥିଲେ, ସେ ଔଷଧ କଟକ ହସ୍‌ପିଟାଲରେ ତିଆରି କରି ପାରିଲେ ନାହିଁ । ଦେହ ମୋର ପୁଣି ଖରାପ ହେଲା, ସେ ଔଷଧ ନ ଖାଇବାରୁ ।  ଆଜି ପର୍ଯ୍ୟନ୍ତ ବୁଢ଼ୀ ହୋଇଗଲି ରୋଗ ଛାଡ଼ିଲାନି ।

କିଛି ଦିନ ପରେ ଦେହ ତାଙ୍କର ଖରାପ ହେଲା । ସେ ସବୁବେଳେ ଦେହ ଲାଗି ବ୍ୟସ୍ତ ହେଲେ ? ଡାକ୍ତରଙ୍କୁ ତାଙ୍କର ଭାରି ଭୟ । କବିରାଜି ହୋମିଓପାଥି ଔଷଧ ଖାଇବେ । ଡାକ୍ତର ପାଖକୁ ଯିବେନି ।

ଦିନେ ହଠାତ୍ ଦେହ ବହୁତ ଖରାପ ଲାଗିଲା । ଖାଇବାକୁ ଭଲ ଲାଗିଲାନି ଖାଲି ଶୋଇ ରହିଲେ । ବଡ଼ ପୁଅ ଡାକ୍ତର ପାଖକୁ ନେଇ କରି ଗଲା । ଅଧାବାଟରୁ ଡାକ୍ତର ପାଖକୁ ନ ଯାଇ କବିରାଜ ପାଖକୁ ଯିବି କରିଗଲେ । ସେଠାରୁ ଔଷଧ ଆଣି ଖାଇଲେ । ତିନି ଚାରିଦିନ ପରେ ତାଙ୍କର ଦେହ ବହୁତ ଖରାପ ହେଲା । କିଛି ଉପଶମ ହେଲାନାହିଁ । ମୁଁ ଯେତେ କହିଲି କବିରାଜି ଔଷଧ ଖାଅନି ସେ ଶୁଣିଲେ ନାହିଁ । କ'ଣ କରିବି ମୋତେ କିଛି ବୁଦ୍ଧି ଦେଖାଗଲାନି ।

ଏହି ଭିତରେ ତାଙ୍କ ଦେହ ବହୁତ ଖରାପ ହେଲାଣି । ବଡ଼ ପୁଅର ଛୁଟି ଥାଏ । ବଡ଼ ଝିଅ ବୁଲୁକୁ ଫୋନ୍ କରି ଡକାଇଲି । ପୁଅ ଝିଅ ମିଶି ଡାକ୍ତରକୁ ଡାକିକରି ଘରକୁ ଆଣିଲେ । ଡାକ୍ତର ଦେଖି ଔଷଧ ପତ୍ର ଦେଲେ । ଔଷଧ ଆରମ୍ଭ ହେଲା । ରକ୍ତ, ପରିସ୍ରା ସବୁ ପରୀକ୍ଷା ହବାକୁ ଦିଆହେଲା ।



Digitized by PPRACHIN, SOA

ସେଦିନ ଗାନ୍ଧୀ ଜୟନ୍ତୀ ଛୁଟିଥାଏ। ମଝିଆ ପୁଅ ଘରେ ଥାଏ ବଡ଼ ପୁଅ ଅଫିସକୁ ଯାଇଥାଏ।

କାହ୍ନୁଚରଣ ଖାଇପିଇ ଖଟ ଉପରେ ଶୋଇଥା'ନ୍ତି। ମଝିଆଁ ପୁଅକୁ ଡାକିଲେ । କହିଲେ ମୋତେ ଘରକୁ ନେଇଯାଅ। ଏଠି କାହିଁକି ରଖିଛ ? ମୁଁ ଦୌଡ଼ିଗଲି ତାଙ୍କ ପାଖକୁ ଦେଖିଲି ମୁଣ୍ଡ ତାଙ୍କର କାମ କରୁନି। କହିଲେ ବାଥରୁମ ଯିବି। ମୁଁ ଧରି ଧରି ନେଲି ବାଥରୁମ୍‌ରେ ଦେଖିଲି ସେ ଗୋଟାକ ଯାକ ଥରୁଛନ୍ତି। ମଝିଆ ପୁଅକୁ ଡାକ ପକାଇଲି ଦୁହେଁ ମିଶି ତାଙ୍କୁ ଖଟ ଉପରେ ଶୁଆଇ ଦେଲୁ ? ମୋର ମନ ବହୁତ ଦବିଗଲା। ଅସ୍ଥିର ହୋଇ ବଡ଼ ଝିଅକୁ ଫୋନ୍ କଲି। ଝିଅ ବୁଲୁ ଗାଡ଼ି ନେଇ ଆସି ପହଞ୍ଚିଲା। ପୁଅ ଝିଅ ଡାକ୍ତରଙ୍କୁ ପଚାରି କଳିଙ୍ଗ ହସପିଟାଲ୍‌କୁ ନେଇଗଲେ। ଝିଅ ଯୋଇଁ ମୋ ଭାଇମାନେ ଶୁଣି ହସପିଟାଲ୍‌ରେ ପହଞ୍ଚିଲେ। ରାତି ରାତି ସବୁ ପରୀକ୍ଷା କରାଗଲା। ଜଣାଗଲା ଅବସ୍ଥା ବହୁତ ଖରାପ। ଆଇ.ସି.ୟୁରେ ରଖାଗଲା। ବାରଦିନ ସାଲାଇନ୍ ଚାଲିଲା।

ସ୍ୱାମୀଙ୍କ ପାଇଁ ଠାକୁରଘରେ ଅଖଣ୍ଡଦୀପ ଜାଳି ବସିଥାଏ। ସାନ ପୁଅ ଦୌଡ଼ି କରି ଆସିଲେ। ପିଲାମାନେ ସବୁ ପାଳିକରି ବାପାଙ୍କ ପାଖରେ ବସି ସେବା କରୁଥାନ୍ତି। ତାଙ୍କର ଭାଇ ପୁତୁରା ରାତିରେ ଜଗି ରହନ୍ତି। ମୋ ଭାଇମାନେ ମଧ୍ୟ ଖାଇବା ଦବା ନବା ଖବର ବୁଝନ୍ତି। ଏହିପରି ପରିବାର ଲାଗି ପଡ଼ିଥାନ୍ତି ସେବା ଯତ୍ନରେ। ଆଶା କରିଥାନ୍ତି କେବେ ଭଲ ହେବାକୁ। ମୁଁ ମଝିରେ ମଝିରେ ଯାଇ ଦେଖି ଆସେ। ସେଠାରେ ତାଙ୍କର ଅବସ୍ଥା ଦେଖି ମୁଁ ଧର୍ଯ୍ୟ ଧରି ପାରେ ନାହିଁ। ସେଥିପାଇଁ ମୋତେ ପିଲାମାନେ ଧର୍ଯ୍ୟ ଧରିବାକୁ ବୁଝାନ୍ତି। ସାହସ ଦିଅନ୍ତି। ଡାକ୍ତରଖାନାକୁ ମୋତେ ନବାକୁ ରାଜି ହୁଅନ୍ତି ନାହିଁ।

ଏମିତି ପନ୍ଦର କୋଡ଼ିଏ ଦିନ ପରେ କାହ୍ନୁ ଚରଣଙ୍କର ଦେହଟିକେ ଭଲ ହବାକୁ ଆସିଲା। ସେ ରୁମକୁ ଆସିଲେ। ଖାଇବାକୁ ଟିକେ ଟିକେ ଦିଆହେଲା। ସେ ଯେମିତି ଜାଣିଲେ ଡାକ୍ତରଖାନାରେ ଅଛନ୍ତି। ବେସ୍ତ ହେଲେ ଘରକୁ ଯିବାକୁ। ନିଜ ଲୋକଙ୍କୁ ଦେଖିଲେ କାନ୍ଦିଲେ।

ଡାକ୍ତରମାନେ ଠିକ୍ କଲେ କାହ୍ନୁଚରଣଙ୍କୁ ଘରକୁ ପଠାଇବାକୁ। ଅନ୍ତତଃ ଘରେ ରହିଲେ ମନ ପରିବର୍ତ୍ତନ ହେବ ଦେହ ଚଞ୍ଚଳ ଭଲ ହୋଇଯିବ। ଡାକ୍ତରଙ୍କ ପରାମର୍ଶରେ ପିଲାମାନେ ବାପାଙ୍କୁ ଘରକୁ ନେଇ ଆସିଲେ। କୌଣସି



Digitized by PPRACHIN, SOA

ଅସୁବିଧା ହେଲେ ଡାକ୍ତରଙ୍କୁ ଡାକିଆଣି ଘରେ ଦେଖାନ୍ତି । ସେହି ଅନୁସାରେ ଔଷଧପତ୍ର ଦିଆହୁଏ ।

କାହ୍ନୁଚରଣ ଖାଇବାକୁ ବହୁତ ହଇରାଣ କରନ୍ତି । ଝିଅ ବୋହୂ ପ୍ରାଣପଣେ ଲାଗିଥାନ୍ତି । ସାରାଦିନ ବଡ଼ଝିଅ ପାଖରେ ଥାଏ ଓ ବୋହୂ ଝିଅମାନେ ପ୍ରାୟ ଦିନସାରା ଯିବା ଆସିବା କରନ୍ତି ।

ମୁଁ ରାତିରେ ଅନିଦ୍ରା ହୋଇ ପାରେନା ଦେହ ଖରାପ ଲାଗି । ଦିନ ଯାକ ଯେତିକି ପାରେ ସେତିକି କରେ । ରାତିରେ ପୁଅମାନେ ଅନିଦ୍ରା ହୋଇ ସବୁ କରନ୍ତି ।

ଯେତେବେଳେ ଭାଗ୍ୟ ଖରାପ ପଡ଼େ, ସେତେବେଳେ ସବୁ ଦୁର୍ଯ୍ୟୋଗ ମାଡ଼ି ଆସେ ।

କାହ୍ନୁଚରଣ ଘରେ ରହିବାର ୧୫/୨୦ ଦିନ ପରେ ପୁଣି ଦେହ ବହୁତ ଖରାପ ହୋଇପଡ଼ିଲା । ପୂଜା ସମୟ, ସେଦିନ କୁମାର ପୂର୍ଣ୍ଣିମା । ପିଲାମାନେ ବାପାଙ୍କୁ ହସ୍‌ପିଟାଲ୍ ନେଇଗଲେ । ଯାହା ହେଉ ପ୍ରଭୁଙ୍କ କୃପାରୁ ସବୁ ଠିକ୍ ହୋଇଗଲା । ଡାକ୍ତରଖାନାରେ ରହିବାକୁ ପଡ଼ିଲା ନାହିଁ । ଘରକୁ ନେଇ ଆସିଲେ । ହଠାତ୍ ବେଡ୍‌ରୁ ଉଠି ଠିଆ ହୋଇପଡ଼ିଲେ । ସମସ୍ତଙ୍କ ମନଟିକେ ଭଲ ଲାଗିଲା । କୁମାର ପୂର୍ଣ୍ଣିମା ପୂଜାପୂଜି ଭଲରେ ହେଲା ।

କାହ୍ନୁଚରଣଙ୍କର ଛଅ ସାତଦିନ ପରେ ଦିନେ ହଠାତ୍ ରାତିରେ ଦେହ ବହୁତ ଖରାପ ହେଲା । ଡାକିଲେ ଶୁଣିଲେ ନାହିଁ ନିଶ୍ଚଳ ହୋଇ ପଡ଼ିଥାନ୍ତି । ବ୍ୟସ୍ତ ହଉଥାନ୍ତି । ଡାକିଲେ ତାଙ୍କ ଯାହା କହନ୍ତି ସାମାନ୍ୟ ବୁଝିପାରନ୍ତି । ଉତ୍ତର ଦେଇ ପାରନ୍ତି ନାହିଁ । ଶୀତଦିନ ଅଦିନିଆ ଝଡ଼ ବର୍ଷା ଘରୁ ପଦାକୁ ବାହାରିବା କଷ୍ଟ । ପବନ ବହୁତ । ରାତି ଦଶଟା ସମୟ । ପୁଅ ସେହି ଅବସ୍ଥାରେ ବ୍ଲଡ୍ ନଇେ ପରୀକ୍ଷା କରାଇଲା ଡାକ୍ତରଙ୍କ ପାଖରେ । ପରୀକ୍ଷାରୁ ଜଣାଗଲା ଅବସ୍ଥା ବହୁତ ଖରାପ ।

ସଙ୍ଗେ ସଙ୍ଗେ କଳିଙ୍ଗ ହସପିଟାଲକୁ ଡାକ୍ତରଙ୍କ ପାଖକୁ ଫୋନ୍ କରାଗଲା । ସେ, କହିଲେ, ମୋର ରାତି ତିଉଟି ମଉସାଙ୍କୁ ନେଇ ଆସନ୍ତୁ । ଆମ୍ବୁଲାନସ୍ ଅତି କଷ୍ଟରେ ମିଳିଲା । ପିଲାମାନେ କମଳ ଘୋଡ଼ାଇ ପୋଡ଼ାଇ ନେଇଗଲେ ବାପାଙ୍କୁ ।



Digitized by PPRACHIN, SOA

କାହ୍ନୁଚରଣ ଯେତେବେଳେ ହସ୍‌ପିଟାଲ୍ ଗଲେ ବୋଧହୁଏ ଜାଣି ପାରିଲେ ସେ ଆଉ ବଞ୍ଚିବେ ନାହିଁ। ହାତ ଠାରି ମୋତେ ଡାକିଲେ ପାଖକୁ। ଆଖିରୁ ଲୁହ ଗଡ଼ି ପଡୁଥାଏ। ମୋତେ ବହୁତ ଗେହ୍ଲା କଲେ। ମୁଁ ତାଙ୍କ ଛାତିରେ ମୁଣ୍ଡ ରଖି କାନ୍ଦୁଥାଏ। ମୁଁ ଜଗନ୍ନାଥଙ୍କୁ ଡାକୁଥାଏ ପ୍ରଭୁ ମୋତେ ଏଇଠି ନେଇଯାଅ। ମୁଁ ଆଉ ସମ୍ଭାଳି ପାରୁନି।

ମନରେ ମୋର କେତେ ଦୁଃଖ ପିଲାମାନେ ଆସିବା ବାଟକୁ ମୁଁ ଚାହିଁ ବସିଥାଏ। ପିଲାଏ ଆସି କହନ୍ତି ଯେମିତି ସେମିତି।

କାହ୍ନୁଚରଣ ହସପିଟାଲରେ ଥିଲାବେଳେ ଦିନେ ଦୁଇ ଝିଅ ବୁଲୁ ଓ ଲିଲିଙ୍କୁ ହାତଠାରି ପାଖକୁ ଡାକି କହିଲେ, କାନ୍ଦନି ସାଙ୍ଗ ହୋଇ ଚଳିବ। ବୋଉ କଥା ବୁଝିବ ? ଏ କଥାଶୁଣି ମୋ ଛାତି ଫାଟି ପଡ଼ିଲା ପରି ଲାଗିଲା। ଠାକୁରଙ୍କ ପାଖରେ ମୁଣ୍ଡିଆଟିଏ ମାରି କହିଲି ପ୍ରଭୁ ମୋତେ ନେଇ ଯାଅ।

କାହ୍ନୁଚରଣ ପିଲାମାନଙ୍କୁ ଦେଖି ବହୁତ କାନ୍ଦିଲେ ଖନେଇ ଖନେଇ କହିଲେ ବୋଉ କାହିଁ। ପିଲାମାନେ କହିଲେ, ବୋଉ ତୁମ ପାଖରେ ଅଛି। ସେ କିଛି ଜାଣି ପାରୁନଥିଲେ। ଯାହାଂ କହୁଥିଲେ ତାଙ୍କ କଥା କିଛି ବୁଝି ହଉନଥିଲା। ମୁଁ ଖାଲି ଠାକୁର ଘରେ ଭଗବାନଙ୍କୁ ଡାକି ଦୀପ ଜାଳୁଥାଏ। ଆଉ କ'ଣ ବା କରିପାରି ଥାନ୍ତି ସେ ସମୟରେ ?

ମଙ୍ଗଳବାର ଦିନ ଦୁଆରବାସିନୀ ଠାକୁରାଣୀଙ୍କ ପାଖରେ ଚଣ୍ଡିପାଠ କରାଗଲା ତାଙ୍କ ଦେହ ଭଲ ହବା ପାଇଁ। ଯିଏ ଯାହା କହନ୍ତି ସବୁ କରା ହଉଥାଏ। ତା' ଆରଦିନ ବୁଧବାର ଡିସେମ୍ବର ୫ ତାରିଖ ଜଗନ୍ନାଥଙ୍କର କ୍ଷେତ୍ର ପରିକ୍ରମା। ସୀତା ବିବାହ। ପିଲାମାନେ ଦିନଯାକ ଡାକ୍ତରଖାନାରେ ରହି ଫେରିଛନ୍ତି। ବଡ଼ପୁଅ, ବଡ଼ଝିଅ ରାତି ନଅଟା ବେଳକୁ ଫେରିଲେ। ଭାଇ ପୁତୁରା ତାଙ୍କର ରହିଲେ ରାତିରେ ଜଗିବା ପାଇଁ।

ରାତି ଦଶଟା ବେଳକୁ ତାଙ୍କୁ ନିଶ୍ୱାସ ନବାକୁ କଷ୍ଟ ହେଲା। ସମସ୍ତେ ବ୍ୟସ୍ତ ହୋଇପଡ଼ିଲେ ଡାକ୍ତର ଆସି ଅକ୍ସିଜେନ୍ ଦେଲେ। ତାଙ୍କର ଭାଇ ଗଉରା ଜଗନ୍ନାଥଙ୍କ ସ୍ତୁତି ଗାଇ ମୁଣ୍ଡ ଆଉଁସୁଥାନ୍ତି। ପୁତୁରା ପାଖରେ ବସିଥାଏ। କାହ୍ନୁଚରଣ ଆଖିଖୋଲି ଚାରିଆଡ଼କୁ ଚାହିଁଲେ। ଧିରେ ଧିରେ ଆଖି ବୁଜି ଶେଷ ନିଶ୍ୱାସ ତ୍ୟାଗ କଲେ।



Digitized by PPRACHIN, SOA

ସଙ୍ଗେ ସଙ୍ଗେ ଖବର ଆସିଲା ପିଲାମାନେ ଧାଇଁଲେ। ମୋ ସଂସାର ସରିଗଲା ମୁଁ ମୁକପରି ବସିଥାଏ। ଧାର ଧାର ହୋଇ ଲୁହ ଗଡ଼ି ପଡୁଥାଏ। ମୁଁ ଚାହିଁଥାଏ ସ୍ୱାମୀଙ୍କ ଆସିବା ବାଟକୁ ?

ରାତି ଗୋଟାଏ ବେଳକୁ କାହ୍ନୁଚରଣଙ୍କୁ ନେଇ କରି ଆସି ତାଙ୍କ ଶୋଇବା ଘର ଖଟ ଉପରେ ଶୋଇଦେଲେ। ପୁଅ ବୋହୂ ଝିଅ ଯୋଇଁ ନାତିନାତୁଣୀ ସମସ୍ତେ କାନ୍ଦୁଥାନ୍ତି। ବନ୍ଧୁବାନ୍ଧବ ଛାତ୍ରଛାତ୍ରୀମାନେ ଘରେ ଭର୍ତ୍ତି।

ଦୌଡ଼ିଗଲି ସ୍ୱାମୀଙ୍କ ପାଖକୁ ତାଙ୍କ ଦେହମୁଣ୍ଡ ଆଉଁସି ପକାଇ ତାଙ୍କ ଛାତି ଉପରେ ପଡ଼ି କାନ୍ଦି ଉଠିଲି ? ମୁଁ ଆଗ ଯାଇଥାନ୍ତି ତୁମେ ମୋତେ କୁଆଡ଼େ ଛାଡ଼ି ଦେଇଗଲ। ମୁଁ କିପରି ବଞ୍ଚିବି କୁହ ?

ପିଲାମାନେ ମୋତେ କୁଣ୍ଢାଇ ଧରିଥାନ୍ତି। ଚେତାଶୂନ୍ୟ ପରି ମୁଁ ପଡ଼ିଥାଏ। ମନ ମୋର ଛିନ୍ନଭିନ୍ନ ହୋଇଯାଉଥାଏ। ମନର ବଳ ଭାଙ୍ଗିଯାଉଛି। ମୁଁ ଆଉ ସମ୍ଭାଳି ପାରୁ ନଥାଏ। ଆଖିରୁ ମୋର ଲୁହ ଗଡ଼ିପଡୁଥାଏ। ଜଗନ୍ନାଥଙ୍କୁ ଡାକିଲି ହେ ପ୍ରଭୁ ତାଙ୍କୁ ମୋ ପାଖରୁ ନେଇଗଲ। ତାଙ୍କୁ ଶାନ୍ତିରେ ରଖ। ତାଙ୍କ ପାଖକୁ ମୋତେ ନେଇଯାଅ।

ଏ ଅଲିଭା ସ୍ମୃତି ମରିବା ପର୍ଯ୍ୟନ୍ତ ହୃଦୟରୁ ଲିଭିବ ନାହିଁ। ଭଲରେ ଶୁଦ୍ଧିକାମ ସମ୍ପନ୍ନ ହେଲା । ପିଲାମାନେ, ଭାଇମାନେ ବହୁତ ଆଡ଼ମ୍ବରରେ କଲେ। ଗାଁ ଲୋକଙ୍କୁ ଖୁବ୍ ସେ ଭଲ ପାଆନ୍ତି। ଗାଁରେ ତାଙ୍କ ଭାଇ ପୁତୁରା ଓ ମୋ ପୁଅ ଝିଅ ମିଶି ବହୁତ ଲୋକଙ୍କୁ ଖୁଆଇଲେ।

ଯେଉଁଦିନ କାହ୍ନୁଚରଣ ଗଲେ। ତା' ଆରଦିନ ରାତି ଗୋଟାଏ। କାନ୍ଦି କାନ୍ଦି ଶୋଇ ପଡ଼ିଥାଏ ମୁଁ। ସ୍ୱପ୍ନରେ ଦେଖିଲି ସେ ଆସି ମୋ ଶୋଇଲା ଘର କବାଟ ପାଖରେ ଛିଡ଼ା ହୋଇଛନ୍ତି। ମୁଁ ତାଙ୍କୁ କହୁଛି କାନ୍ଦିକରି, କୁଆଡ଼େ ତୁମେ ଯାଇଥିଲ। ସେ କହୁଛନ୍ତି ମୁଁ ପଇତା ଲଗେଇ ଆସିଛି। ସଙ୍ଗେ ସଙ୍ଗେ ମୋ ନିଦ ଭାଙ୍ଗିଗଲା। ଆଖିରୁ ବୋହି ପଡ଼ିଲା ଧାରାଶ୍ରାବଣ ପରି ଲୁହ। ଦୁଃଖରେ ଅଭିଭୂତ ହୋଇ ପଡ଼ିଲି। ଜାବୁରିଆ ଅନ୍ଧାର ହୋଇଥାଏ। ଆକାଶକୁ ଚାହିଁଲି ଝରକା ବାଟେ। କେତେ ଅତୀତ କଥା ମନେ ପଡୁଛି। ସମସ୍ତେ ଅଛନ୍ତି ଘରଟା ଲାଗୁଛି ଶୂନ୍ୟ ଜଣକ ପାଇଁ। ମୋତେ ଗୋଟିଏ ଦିନ ଗୋଟିଏ ବର୍ଷ ପରି


Digitized by PPRACHIN, SOA

ଲାଗୁଛି । ଦିନ ଯାକ ଘର କାମ କରି କରି ବ୍ୟସ୍ତ ରହିଯାଏ । ରାତିରେ କ୍ଲାନ୍ତ ହୋଇ ଶୋଇ ପଡ଼େ ମୁଁ । ରାତି ୩ଟା ଚାରିଟାରେ ନିଦ ଭାଙ୍ଗିଯାଏ । ମନେ ପଡ଼ିଯାଏ ସ୍ୱାମୀଙ୍କ କଥା । ମୋତେ ଯେପରି ଲାଗେ କିଏ ଆସି ମୋତେ ହଲେଇ ଦେଇ ଡାକୁଛି । ଚାଉଁକିନା ନିଦ ଭାଙ୍ଗିଯାଏ ବିଛଣାରୁ ଉଠି ବସିପଡ଼େ । ଆଖିରୁ ଝରି ପଡ଼େ ଅଜସ୍ର ଲୁହ ।

କାହ୍ନୁଚରଣ ନିତି ରାତି ପାଞ୍ଚଟାରୁ ଉଠି ମୋତେ ଡାକନ୍ତି ଚା' କରିବାକୁ । ଚା' ଟିକେ ଖାଇ ଯାଆନ୍ତି ପ୍ରାତଃ ଭ୍ରମଣରେ । ସେଇ ଅଭ୍ୟାସ ମୋର ରହିଯାଇଛି ଆଜି ପର୍ଯ୍ୟନ୍ତ । ସେ ଗଲାପରେ ମଧ୍ୟ ମୋର ନିଦ ଭାଙ୍ଗିଯାଏ । ନିତ୍ୟ କର୍ମସାରି ନିରୋଳାରେ ମୁଁ ଲେଖାଲେଖି କରେ ।

ପିଲାମାନେ ଉଠିଲେ ମୁଁ ବ୍ୟସ୍ତ ରହେ ପୁଣି କାମରେ ମୋତେ ବସିବାକୁ ଭଲଲାଗେ ନାହିଁ । ଦିନଯାକ ଘରଜଞ୍ଜାଳରେ ବ୍ୟସ୍ତ ରହିଥାଏ । ମୁଁ ଘରକାମ ସହିତ ଭଲ ସିଲେଇ ପତ୍ର କରେ । ବଗିଚା କାମ କରେ ଏବଂ କାହାର ପୁଅ ଝିଅ ଜନ୍ମ ହେଲେ ଛୋଟ ଛୋଟ ଫ୍ରକ୍ ଜାମା, କେକ, କନ୍ଥା ସିଲେଇ ଦେବାକୁ ମୁଁ ଭଲପାଏ – ଟିକିଏ ସମୟ ମିଳିଲେ ମୁଁ ସମସ୍ତଙ୍କ ପାଇଁ ସ୍ୱେଟର, ଟୋପି – ମୋଜା ବୁଣିଲାଗେ । ଏହାଛଡ଼ା ବଗିଚା କାମ କରିବାକୁ ଭଲପାଏ ।

ସେ ଥିଲାବେଳେ ସଦାବେଳେ ମୋତେ କହୁଥିଲେ ଏତେ କାମ କରନି ଦେହକୁ ଜଗି ଚଳ । ଟିକେ ବିଶ୍ରାମ ନିଅ । କିନ୍ତୁ ମୁଁ ବସି ପାରେନି । ମନେ ପଡ଼ିଯାଏ ବହୁତ ଦିନ ତଳର ହଜିଲା ସ୍ମୃତି । ମୋ ଜୀବନଟା ସଙ୍ଘର୍ଷମୟ ଜୀବନ ।

ଚାହୁଁ ଚାହୁଁ ବିଗତ ଛଅ ବର୍ଷ ହୋଇଗଲା ଯିବାର । କିନ୍ତୁ ମନମୋର ଚାଲିଛି ଅସରନ୍ତି ଭାବନା । ସବୁ ଯେପରି ସ୍ୱପ୍ନପରି ଲାଗୁଛି । ମନକୁ ବୁଝାଇଲେ ମଧ୍ୟ ମନମୋର ବୁଝୁନାହିଁ । ଛାତି ଭିତରଟା ସମୟ ସମୟରେ ମକ୍ଚି ହୋଇଯାଉଛି ? ଗାଡ଼ି ଚାଲୁଥିଲେ ଚାଲୁଥିବ । ଇଞ୍ଜିନ୍ ଖରାପ ହେଲେ ଗାଡ଼ି ରହିଲା ବର୍ତ୍ତମାନ ମୁଁ ସେହି ଅବସ୍ଥାରେ ଚାଲିଛି । ଶରୀର ଦିନକୁ ଦିନ କ୍ଷୀଣ ହୋଇଯାଉଛି । କେତେଦିନ ମୁଁ ନିଜର ଶରୀରକୁ ଘୋଷାରି ଘୋଷାରି ଚାଲିବି । ତା' ମୁଁ ନିଜେ ବୁଝିପାରୁନି । ପ୍ରଭୁଙ୍କ ଉପରେ ଶରୀର ଏବଂ ମନଟାକୁ ଛାଡ଼ି ଦେଇଛି । ରଖିଲେ ରଖିବେ ସେ ଯାହା ତାଙ୍କର ଇଚ୍ଛା ।



Digitized by PPRACHIN, SOA

ଝିଅମାନେ ଆସି କହିବେ ତୁ ଏମିତି ବ୍ୟସ୍ତ ହଉଛୁ କାନ୍ଦୁଛୁ - ନନା ଆମକୁ ସ୍ୱପ୍ନରେ କହୁଛନ୍ତି - କହିଥିଲି ବୋଉ କଥା ବୁଝିବାକୁ ବୋଉ କାହିଁକି କାନ୍ଦୁଛି ବୋଉ କଥା ବୁଝୁଛ ?

ସେ ଥିଲାବେଳେ ଝିଅମାନେ ଭାଇମାନେ ଡାକନ୍ତି ତାଙ୍କ ପାଖକୁ ଯିବା ଲାଗି କିଛି ଦିନ ପାଇଁ। ମୋର ଇଚ୍ଛା ହୁଏ ନାହିଁ ତାଙ୍କୁ ଛାଡ଼ିଯିବାକୁ।

ସେ ଗଲାପରେ ମଧ୍ୟ କୁଆଡ଼େ ଯାଏ ନାହିଁ। ମନେ ମନେ ଭାବେ ସେ ମୋତେ ଯେଉଁ ଗୁରୁ ଦାୟିତ୍ୱ ଦେଇ ଯାଇଛନ୍ତି ଠାକୁର ପୂଜାଠାରୁ ଘରର ଭଲ ମନ୍ଦ ଅଫିସ କାମ ସବୁ କିଛି ଏହି ଜଞ୍ଜାଳରେ ଘାରି ହୋଇପଡୁଛି ମୁଁ । ଘରର ନ୍ୟାୟ ନିମିତ୍ତ ସବୁ କରିବାକୁ ପଡ଼ିବ। ଯେଉଁଠି ବସେ ମନମାରି। କିଛି ଭଲ ଲାଗେନି ମନେ ମନେ ଭାବେ ମୁନା ଲକ୍ଷ୍ନୌରେ ଥିଲାବେଳେ କେତେ ଡାକେ ମୋତେ ତା ନନାଙ୍କୁ । ସିଏ ଗଲେନି ତାଙ୍କ ପାଇଁ ମୁଁ ମଧ୍ୟ ଯାଇପାରିଲି ନାହିଁ। ବମ୍ବେ ରହଣି ମଝିରେ ଜୟପୁର ଯାଇଥିଲି ବାବୁଲି ଆସି ମୋତେ ନେଇ ଯାଇଥିଲା। ମୁନା ଲକ୍ଷ୍ନୌରୁ ବମ୍ବେ ବଦଳୀ ହୋଇ ଆସିଲା।

ମୋ ଅବସ୍ଥା ଦେଖି ସାନଝିଅ ମୁନା ଏକଲା ବମ୍ବେ ଗଲା। ଭାଇ କୁନି ମଧ୍ୟ ବମ୍ବେରେ। ସେ ବଡ଼ କମ୍ପାନୀରେ ଚାକିରି କରିଛି। ସେ ମଧ୍ୟ ବହୁତ ଥର ମୋତେ ଡାକିଛି ଯିବାକୁ। ଭାଇମାନେ କହିଲେ, ତୋ ଝିଅ ବମ୍ବେ ଆସିଲାଣି କେତେ ଦିନ ଯାଇ ବମ୍ବେରେ ବୁଲିଆସେ ତୋର ମନ ପରିବର୍ତ୍ତନ ହେବ। ସମସ୍ତଙ୍କ କଥାଶୁଣି ମନେ ମନେ ଭାବିଲି ଝିଅ ଡାକୁଛି, ଭାଇ ଡାକୁଛି ବମ୍ବେ ଯିବାକୁ । ମୋର ଦେହ ଭଲ ହୁଅନ୍ତା। କିଛିଦିନ ବୁଲି ଆସିଲେ ମନଟା ଟିକେ ଅଲଗା ଲାଗନ୍ତା।

ଭାଇ କୁନି ମଝିରେ ମଝିରେ ଆସେ ଭୁବନେଶ୍ୱର ତା'ର ମିଟିଂ ପଡ଼ିଲେ। ସେ ଯେତେବେଳେ ଆସିଲେ ଭୁବନେଶ୍ୱର ମୋ ପାଖକୁ ଆସେ ମୋତେ ଦେଖିବାକୁ।

ମୋ ଅବସ୍ଥା ଦେଖି ସେ ମୋତେ କହିଲା ନାନୀ ବମ୍ବେ ଚାଲ - ବୁଲାବୁଲି କରି ଆସିବୁ ଭଲ ଲାଗିବ। ତୋ ଝିଅତ ବମ୍ବେ ଆସିଲା, କେବେ ଯିବୁ କହ।



Digitized by PPRACHIN, SOA

ମୁଁ କହିଲି ଭାଇ ଦେଖୁଛୁ ମୋର ଅବସ୍ଥା । ମୁଁ ଟ୍ରେନ୍‌ରେ ଯାଇ ପାରିବି ନାହିଁ । ଆଗରୁ ତ ବମ୍ବେ ଯାଇଛି । ସବୁତ ମୋତେ ଦେଖେଇଛୁ । ଭାଇନା ଥିଲା ବେଳେ ଝିଅଟା କେତେ ଡାକିଲା ଲକ୍ଷ୍ନୌଯିବାକୁ ଯାଇ ପାରିଲି ନାହିଁ । ସେ ବମ୍ବେ ଆସିଲା । ତୁ କେତେ ଡାକିଲୁଣି, ଇଚ୍ଛା ହଉଛି ଯିବାକୁ କିନ୍ତୁ ଯିବା ମୋ ପକ୍ଷରେ ଅସମ୍ଭବ ।

କୁନି କହିଲା ତୋତେ ସବୁ ତୀର୍ଥ କରାଇଲି ଦିଲ୍ଲୀରେ ଥିଲାବେଳେ । ଦିଲ୍ଲୀ କଥା ତୋର ମନେଅଛି ସେ ଯେଉଁ ଅନୁଭୂତି ।

ମୁଁ କହିଲି ହଁ ସେ ଅନୁଭୂତି କ'ଣ ମନରୁ ଯିବ । ତୁ ଦିଲ୍ଲୀରେ ଚାକିରୀ କରୁଥିଲୁ । ଜାନୁୟାରୀ ୨୬ରେ ମୋ ଶ୍ୱଶୁର, ବୋଉ ମୁଁ ତୋ ପାଖକୁ ଗଲୁ । ମିଲି ଜନ୍ମ ବେଳକୁ ଢଳି ତୋ ପାଖରେ ଥାଏ । ଦିଲ୍ଲୀ ହସ୍‌ପିଟାଲ୍‌ରେ ଚାକିରୀ କରିଥିଲେ । ରାଜୁ ବାବୁ, ନନାଙ୍କର ନୂଆବୋଉ, ମୁଁ ଯାଉଥିଲୁ ଆଗ୍ରା, ମଥୁରା, ବୃନ୍ଦାବନ ଆକ୍ସିଡେଣ୍ଟ ହେଲା । ମିଲି ଜନ୍ମ ସବୁ ମନେଅଛି ବେଦର ଗାର ପରି । ସେତିକି ବେଳେ ତୁ ମୋତେ ସବୁ ଦେଖେଇଛୁ । ଆଗ୍ରା ତାଜମହଲ, ମଥୁରା, ବୃନ୍ଦାବନ, ହୃଷିକେଶ, ଲକ୍ଷ୍ମଣଝୁଲା । ସବୁ ତୀର୍ଥ କରାଇଛୁ ମୁଁ କ'ଣ ଭୁଲିଯିବି ?

କୁନି କହିଲା ସବୁତୀର୍ଥ କରାଇଲି ଏଥର ନେଇଯିବି ବମ୍ବେ କ'ଣ କହୁଛୁ ?

ତା' କଥା ଶୁଣି ମୋ ଆଖିରୁ ଲୁହ ଗଡ଼ିପଡ଼ିଲା । କହିଲି ଭାଇନା ଥିଲାବେଳେ କେତେ ତୁ ଡାକିଛୁ ସିଏ ଗଲେନି ତାଙ୍କ ପାଇଁ ମୁଁ ଯାଇପାରିଲି ନାହିଁ ତୋ ପାଖକୁ ।

ମୁନା ସେତେବେଳେ ପୁନାରେ ଥାଏ । ତା ନାତୁଣୀ ଲିତା ସେତେବେଳେ ବମ୍ବେରେ ଚାକିରୀ କରିଥାଏ । ସେ ଭୁବନେଶ୍ୱର ଆସିଥାଏ ଜବରଦସ୍ତି ଡାକିଲା ବମ୍ବେ ଯିବାକୁ ତା ସାଙ୍ଗରେ । ମୁଁ ମୋ ମଝିଆ ଝିଅ ଲିଲି ନାତୁଣୀ ଚିଙ୍କି ଗଲୁ ମୁନା ପାଖକୁ । ଲିତା ଆମକୁ ପୁନା ଷ୍ଟେସନରେ ଛାଡ଼ି ବମ୍ବେ ଗଲା । ସେଠାରେ ମାସେ ରହିଲୁ । ସେତେବେଳେ ମୁନାର ସାନପୁଅ ପ୍ରତୁଷ ଦେହ ଭାରି ଖରାପ ଥାଏ । ସେ ହସ୍‌ପିଟାଲରେ ପଡ଼ିଥାଏ । ଯାହା ହେଉ ସେ ଭଲ ହେଲା ପର୍ଯ୍ୟନ୍ତ ପୁନାରେ ରହିଲୁ । ପୁନାରେ ବୁଲାବୁଲି ସରିଲାପରେ ତୁ ଆସି ବମ୍ବେ ନେଇଗଲୁ



Digitized by PPRACHIN, SOA

ଆମକୁ। ସବୁତ ଦେଖୁଛି ବମ୍ବେକୁ ଆଉ କ'ଣ ଯିବି ? ତୁ ମନୁ। ଡାକୁଛ ବୋଲି ନାହିଁ କରି ପାରୁନି। ଲିତା କଥା ମନେ ପଡ଼ିଲା କାନ୍ଦି ପକାଇଲି। ମୁଁ କହିଲି କୁନିକୁ ବମ୍ବେଯିବା କଥା।

ଶୁଣିଲେ ମୋତେ ଡର ଲାଗୁଛି। କହୁଛନ୍ତି ସବୁ ଟ୍ରେନ୍ ଉଠିଲା ବେଳକୁ ମୁଣ୍ଡ ଝାଙ୍କିଦିଏ। କୁଆଡୁ କ'ଣ ହବ ତୁ ହଇରାଣ, ମୁଁ ହଇରାଣ। ସେ କହିଲା ତୋଠାରୁ ବୁଢ଼ୀ ଲୋକ ଯାଉଛନ୍ତି ପ୍ଲେନ୍‌ରେ।

ସେଦିନ ମୋ ବଡ଼ଭାଇନା ଆସିଥାନ୍ତି ମୋ ଘରକୁ। ସେ ସବୁ ଶୁଣି କୁନିକୁ କହିଲେ ମୁଁ ଯିବି ବମ୍ବେ ନାନୀକୁ ନେଇଯିବି ସାଙ୍ଗରେ। ତୁ ବ୍ୟସ୍ତ ହନା। ସେ ତୁମ ପାଖରେ ସବୁ ବୁଲି ଆସିଲେ ତା'ର ମନ ପରିବର୍ତ୍ତନ ହେବ।

କୁନି କହିଲା ଭାଇନାଙ୍କୁ ମୁଁ ତୁମର ନାନୀର ପ୍ଲେନ୍ ଟିକେଟ୍ କରି ପଠାଇ ଦେବି, ତୁମେ ନାନୀକୁ ନେଇ କରି ଆସିବ। ଭାଇ ଭଉଣୀଙ୍କ ଭିତରେ କଥାବାର୍ତ୍ତା ହେଲା ଦିନ ଠିକ୍ ହେଲା ଯିବା ପାଇଁ।

ସେଦିନ ମାର୍ଗଶୀର ମାସ ଗୁରୁବାର। ସେଦିନ ସକାଳୁ ସକାଳୁ ଲକ୍ଷ୍ମୀ ଠାକୁରାଣୀ ବସାଇ ପୂଜା କରୁଛି। ଗାଁରୁ ଖବର ଆସିଲା ନଣଦେଇ ଅନନ୍ତ ବାବୁ ଚାଲିଗଲେ। ମୁଁ ଏ ଖବର ଶୁଣି  କିପରି ବମ୍ବେ ଯିବି କିଛି ବୁଝି ପାରିଲି ନାହିଁ। ସେଦିନକୁ ବମ୍ବେରୁ ଭାଇ ଟିକେଟ୍ କାଟି ପଠାଇ ଦେଇଛି।

ମୁଁ ବଡ଼ ଭାଇନାକୁ ଫୋନ୍ କରି ସବୁକଥା କହିଲି। ସେ ବିରକ୍ତ ହେଲେ ମୋ ଉପରେ। ମୁଁ କହିଲି ଦେଖ ମୁଁ ଏ ଅବସ୍ଥାରେ ବମ୍ବେ କିପରି ଯିବି। ପିଲାମାନେ ଗାଁକୁ ବାହାରିଲେଣି। ମୋର ବିବେକ ଡାକୁନି ଯିବାକୁ, ଗଲେ ଭଲ ହବନି। ଏମିତିରେ ମୁଁ ଆଉ ବମ୍ବେ ଗଲିନି।

ବମ୍ବେରେ ଭାଇ ଶୁଣି କହିଲା, ଠିକ୍ ଅଛି ମୁଁ ମାର୍ଚ୍ଚ ମାସରେ ଦୋଳକୁ ଯିବି ମୋ ସାଙ୍ଗରେ ଆସିବୁ।

ବଡ଼ ଭାଇନାଙ୍କର କନ୍‌ଫରେନ୍ସ ମିଟିଂ ଥିଲା ବମ୍ବେରେ। ସେ ଆଠ ଦଶଦିନ ପାଇଁ ବମ୍ବେ ଗଲେ। ମୁଁ ଆଉ ବମ୍ବେ ଗଲିନି। ଦୋଳ ବେଳକୁ ଯିବାର ଠିକ୍ ହେଲା।

X X X



Digitized by PPRACHIN, SOA

ମାର୍ଚ୍ଚ ମାସ ୨୭ ତାରିଖକୁ ମୋର ସ୍ୱାମୀ ଡ. କାହ୍ନୁଚରଣ ମିଶ୍ରଙ୍କର ଫଟ ଉନ୍ମୋଚନ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ହବାର ଯୋଗାଡ଼ ଚାଲିଥାଏ। ମୁଁ ସେ କାର୍ଯ୍ୟରେ ବ୍ୟସ୍ତଥାଏ। କିପରି ଫଟ ଉନ୍ମୋଚନ ସରିଲେ ମୁଁ ବମ୍ବେ ପଳାଇବି। ସେଠାରେ ଠିକ୍ ହେଲା ମାର୍ଚ୍ଚ ୨୭ ତାରିଖରେ ଫଟ ଉନ୍ମୋଚନ ହେବ।

ପୁରୀରେ ମୋ ଦିଅର ଥାଆନ୍ତି। ବର୍ଷେ ହେଲା ଯାର ଦେହ ବହୁତ ଖରାପଥାଏ। ଦିଅର ଫୋନ୍ କଲେ ମୋତେ କୁନୁବୋଉ ଦେହ ସିରିଏସ୍। କେତେବେଳେ କ'ଣ ହେବ ମୁଁ କହିପାରୁନି। କ'ଣ ହେଲେ ମୁଁ ଜଣାଇବି।

ଏକଥା ଶୁଣି ମୁଁ ଚିନ୍ତାରେ ବସିପଡ଼ିଲି।

ବମ୍ବେରୁ ଦୋଳ ପାଇଁ ଭାଇ ଆସି ପହଞ୍ଚିଥିଲା। ସେ ଆଠ ଦଶଦିନ ରହି ଦୋଳପୂର୍ଣ୍ଣିମା ପରେ ମୋତେ ନେଇ ବମ୍ବେ ଯିବ।

ମାର୍ଚ୍ଚ ୨୭ ତାରିଖ ଦିନ ଡ. କାହ୍ନୁଚରଣ ମିଶ୍ରଙ୍କର ଫଟ ଉନ୍ମୋଚନ ପାଇଁ ଇନ୍ଷ୍ଟିଚ୍ୟୁଟ୍‌ର ମେମ୍ବରମାନେ ଝିଅ ଯୋଇଁ, ପୁଅ ବୋହୂ, ଦିଅରମାନେ ସମସ୍ତେ କଟକ ଚାଲିଗଲେ। ପଛରେ ମୁଁ ଆଉ ନିନା ଯିବାକୁ ପ୍ରସ୍ତୁତ ହଉଛୁ। ଦିଅର ଫୋନ୍ କଲେ କୁଲୁ ବୋଉ ଚାଲିଗଲା।

ମୁଁ ଶୁଣି ମୋ ମୁଣ୍ଡରେ ଯେପରି ବଜ୍ର ପଡ଼ିଲା। ମନଟା ଦୁଃଖ ହୋଇଗଲା। ଭାବିଲି ବମ୍ବେ ଯିବା ମୋ ଭାଗ୍ୟରେ ନାହିଁ। ସେହି ମନ ଦୁଃଖରେ କଟକ ଗଲି। ଫଟ ଉନ୍ମୋଚନ କାମ ସାରି ରାତି ଦଶଟାରେ କଟକରୁ ଫେରିଲୁ।

ଭାଇ କୁନି ଆସିଥିଲା ଦୋଳକୁ ସେ ଶୁଣି ମନା କଲା କହିଲା ନିଜ ଘରର ଅଣଶୁଦ୍ଧିଆ କିପରି ଯିବୁ? ସେ ଦୋଳପରେ ଚାଲିଗଲା।

ସାନ ଭାଇର ପୁଅର ବାହାଘର ହଠାତ୍ ଠିକ୍ ହେଲା ମେ ୬ରେ ସେଠୁ ଭାଇମାନେ କହିଲେ, ସେତିକି ବେଳକୁ ଯିବୁ। ବାହାଘର ମେ ୬ତାରିଖରେ ହେବ। ରିସେପ୍‌ସନ୍ ଆଠରେ ହେବ। ଦଶରେ ବମ୍ବେ ଯିବା।

ଦୋଳ କାମ ସାରି କୁନି ବମ୍ବେ ଚାଲିଗଲା। ମେ ୫ ତାରିଖରେ ଭାଇ, ଭାଉଜ, ପୁତୁରା ସମସ୍ତେ ମଙ୍ଗଳପାକ ଦିନ ପହଞ୍ଚିଲେ ଭୁବନେଶ୍ୱରରେ। କୁନି କହିଲା ନାନୀ ମୋ ସାଙ୍ଗରେ ତୋର ଯୋଗ ଅଛି ବମ୍ବେ ଯିବାକୁ।



Digitized by PPRACHIN, SOA

ଝିଅ ଯୋଇଁ ନାତି ଦୁଇଜଣ ଭାରି ଖୁସି ବୋଉ ଆସିବ। ସେମାନେ ମୋ ଯିବା ବାଟକୁ ଚାତକ ପରି ଚାହିଁ ରହିଥାନ୍ତି।

ମେ ଦଶ ତାରିଖରେ ବମ୍ବେ ବାହାରିଲି ଭାଇ ଭାଉଜ (କୁନି, ଉମା) ସଙ୍ଗରେ। ଏ. ଆର୍. ପୋଟ୍ ପାଖକୁ ଝିଅ ଯୋଇଁ ପୁଅ ବୋହୁ ନାତୁଣୀମାନେ ମୋତେ ଛାଡ଼ିବାକୁ ଆସିଥାନ୍ତି।

କିନ୍ତୁ ମନେ ମନେ ଭାବୁଥାଏ ମୁଁ କ'ଣ ଆମେରିକା ନା ଲଣ୍ଡନ ଯାଉଛି ଆସିଛନ୍ତି ଏ ଖରାରେ ଦେହ ମୁଣ୍ଡ ପୋଡ଼ି ଯାଉଛି ମୋତେ ଛାଡ଼ିବାକୁ।

ଏଣେ ମନରେ ଭୟ ଥାଏ। ଏଣେ ଲାଜ ଲାଗୁଥାଏ। କିନ୍ତୁ ଭାଇ ଭାଉଜଙ୍କ ସାଙ୍ଗରେ ଯାଉଥାଏ ବୋଲି ସାହସ ଆସୁଥାଏ।

ପ୍ଲେନ୍ ଆସିଗଲା। ଟାଇମ୍ ହୋଇଗଲା ପ୍ଲେନ୍‌କୁ ଯିବା। ସବୁଠାରେ ଚେକପ୍ ହେଲା। ଲଗେଜ୍ ସବୁ ଚାଲିଗଲା। ମୋତେ ଆଶ୍ଚର୍ଯ୍ୟ ଲାଗୁଥାଏ।

ଆଗରୁ ବଡ଼ ଭାଇନା, ସାନଭାଇ, ଝିଅ ଯୋଇଁ କହିଲେ - ବମ୍ବେ ଯାଉଛୁ ମନଖୁସି କରି ବୁଲିବୁ। ଘରଚିନ୍ତା କରିବୁ ନାହିଁ।

ବାବୁଲି ଜୟପୁର ଛୁଟିନେଇ ଆସିଲା। ସବୁକଥା ଶୁଣୁଥାଏ। କିନ୍ତୁ ଜଣକ ପାଇଁ ଉଣା ଲାଗୁଥାଏ ମୋର ମନଟା।

ସେ ସାଙ୍ଗରେ ଥିଲେ ଯେମିତି ଲାଗିବ। ଏକା ବୁଲିଲେ ସେମିତି ଲାଗିବ ନାହିଁ। ଏ ନିଃସଙ୍ଗ ଜୀବନ। ଏହା ଭାବି କାନ୍ଦି ପକାଇଲି। ମନକୁ ବୁଝାଇ ଭାବିଲି, ଭାଇ ଭାଉଜ ଶ୍ରଦ୍ଧାରେ ଡାକିକରି ନେଉଛନ୍ତି। ଝିଅ ଯୋଇଁ ନାତି ଦୁଇଜଣ ମୁଁ ଯିବା ଶୁଣି କେତେ ଖୁସି ହଉଛନ୍ତି। ମୁଁ ଦୁଃଖ କରି କାନ୍ଦିଲେ ତାଙ୍କ ମନର ସରାଗ ଭାଙ୍ଗିଯିବ। ଆଖିରୁ ଲୁହ ପୋଛି ମନକୁ ବୁଝାଇ ଖୁସିରେ ଭାଇ ଭାଉଜଙ୍କ ସାଙ୍ଗରେ ପ୍ଲେନରେ ବସିଲି। ପ୍ଲେନ ଭିତର ଆଗରୁ ମୁଁ ଜମା ଦେଖିନଥାଏ। ଦେଖିଲା ପରେ ମୋତେ ବହୁତ ଭଲଲାଗିଲା।

ଉମା ମୁଁ ଲାଗି ଲାଗି ଦୁଇଟା ସିଟ୍‌ରେ ବସିଲୁ? ଆର୍ ପଟ ସିଟ୍‌ରେ କୁନି ବସିଲା। ପ୍ଲେନ୍ ଛାଡ଼ିବା ବେଳ ହୋଇଗଲା। ଆନାଉନ୍ସ ହେଲା ବେଲ୍ଟ ବାନ୍ଧିବାକୁ। ଏୟାର୍ ହୋଷ୍ଟେସ୍‌ମାନେ ତୁଳା ଦେଇଗଲେ କାନରେ ଦବାକୁ।



Digitized by PPRACHIN, SOA

ଉମା, ମୁଁ ଗପ କରୁଥାଉ ପ୍ଲେନ୍ କେତେବେଳେ ଉଠିଲା ଉପରକୁ ମୁଁ ଜାଣି ପାରିଲି ନାହିଁ। ପ୍ଲେନ୍ ଚାଲିଲା। ମୁଁ ଜାଣିଲି। ମୁଁ କହିଲି କୁନିକୁ ସମସ୍ତେ କହୁଥିଲେ ପ୍ଲେନ୍ ଉଠିଲେ, ମୁଣ୍ଡ ବୁଲାଇବ। ମୁଁ କିନ୍ତୁ ଜାଣିପାରିଲି ନାହିଁ। ଭାରି ଆରାମ ଲାଗୁଥାଏ।

ଏୟାର୍ ହୋଷ୍ଟେସ୍‌ମାନେ ସମସ୍ତଙ୍କ ଖବର ବୁଝୁଥାନ୍ତି। ଚକ୍ ଲେଟ୍ ଦେଲେ ଖାଇବାକୁ।

ଦୁଇଟାରେ ଭୁବନେଶ୍ୱରରୁ ଛାଡ଼ିଲା। ଲଞ୍ଚ ଦେଲେ ତା' ଭିତରେ। ବମ୍ବେରେ ଚାରିଟାରେ ପ୍ଲେନ୍ ଏୟାର୍‌ପୋର୍ଟରେ ପହଞ୍ଚିଲା। ମୁଁ ଆଶ୍ଚର୍ଯ୍ୟ ହୋଇଗଲି। କୁନି କହିଲା ନାନୀ ଭାଉଜ ନଣନ୍ଦ ଗପ କରୁ କରୁ ବମ୍ବେ ହୋଇଗଲା।

ଝିଅ ନାତି ଦୁଇଜଣ ବାହାରେ ଅପେକ୍ଷା କରିଥାନ୍ତି। ଆମେ ଲଗେଜ୍ ନେଇ ବାହାରକୁ ଗଲୁ। ନାତି ଦୁଇଜଣ କୁଣ୍ଡାଇ ପକାଇଲେ ମୋତେ କହିଲେ – ବୋଉ କୋଉଦିନ ଆମ ଘରକୁ ଯିବୁ। ମୁଁ ତାଙ୍କୁ କହିଲି ମାମୁଁ ଅଜାଘରେ ୬/୭ ଦିନ ରହି ତମ ପାଖକୁ ଯିବି।

କୁନି ଘରେ ପହଞ୍ଚି ତା' ଘର ଦେଖିଲି ମୋତେ ବହୁତ ଭଲ ଲାଗିଲା।

ସାନ ଝିଅ ମୁନା ଭୁବନେଶ୍ୱର ଆସିବ ପିଲାଙ୍କୁ ନେଇ ୨୮ ତାରିଖକୁ ତା'ର ପ୍ଲେନ୍ ଟିକଟ୍ ହୋଇଯାଇଥାଏ। ଫେରିବା ଟିକେଟ୍ ମୋର ସେହିଦିନକୁ ହେଲା।

ଭାଇ, ଭାଉଜ ମୋର ବହୁତ ଯତ୍ନ ନେଉଥାନ୍ତି। ଯୁଆଡ଼େ ଗଲେ ଭାଇ ଅଫିସ୍ ଯାଇ ଏ.ସି. ଗାଡ଼ି ପଠାଇଦିଏ। ବଜାରକୁ ଭାଉଜ ନେଇ କରିଯାଏ। ବମ୍ବେ ସହର ବୁଲିଲେ ଭୁବନେଶ୍ୱର ମୋତେ ଗାଁ ପରିଲାଗେ।

ସକାଳୁ ମୁଁ ଉଠେ। ଭାଇ ଉଠି ଆସି ମୋ ପାଖରେ ବସେ । ଭାଇ ଭଉଣୀ ବହୁତ ଗପକରୁ। ପୁତୁରା ବଣ୍ଟିଆ ଆସି ପାଖରେ ବସେ। ଉମାର କଲେଜ ଛୁଟି ଥାଏ ବୋଲି ମୋର ବମ୍ବେ ଯିବା ସାର୍ଥକ ହେଲା। ଖାଇବା ଭଲ ମନ୍ଦ ବହୁତ ଯତ୍ନ ନିଏ ସେ। ମୁଁ ଟଙ୍କା ନେଇଥିଲେ ମଧ୍ୟ ଭାଇ ଖର୍ଚ୍ଚ କରିବାକୁ



Digitized by PPRACHIN, SOA

ଟଙ୍କାଦିଏ। ମୁଁ ଯେତେ ମନାକଲେ ସେ ଶୁଣେନି ଦବା ନବା ଯତ୍ନ କେଉଁଥିରେ ସେମାନେ ଊଣା କରିନାହାନ୍ତି। ଭାଇ ଘରେ ଯେଉଁ ପିଲାଟି ଅଛି ସୁରେଶ ମୋ କଥା ବହୁତ ବୁଝେ।

ଏହିପରି ଆଠ ଦଶଦିନ ଭାଇ ଘରେ ରହି ମୁନା ପାଖକୁ ଆସିଲି। ଝିଅ ଯୋଇଁ ଦୁଇ ନାତିଙ୍କର ଆନନ୍ଦ କହିବାକୁ ନାହିଁ। ଦୁଇ ନାତି ଯାଉଣୁ ଆସୁଣୁ ମୋତେ ଗେହ୍ଲା କରିବାକୁ ଲାଗିଲେ। ଝିଅ ଯୋଇଁ ଦୁଇ ନାତି ଗଣେଷ ମନ୍ଦିର ମୋତେ ନେଇ କରିଗଲେ । ପୂଜାପୂଜି କରି ରାତି ୧୦ଟା ଫେରିଲୁ। ତାଙ୍କ ଘର ପାଖରେ ସମୁଦ୍ର । ସେଠାକୁ ବୁଲିବାକୁ ଗଲୁ। ନାବାର୍ଡ କଲୋନି ଏତେ ସୁନ୍ଦର ନଦେଖିଲେ କେହି ବିଶ୍ୱାସ କରିହବନି। ତା' ଭିତରେ ଗଣେଷ ମନ୍ଦିର। ପାର୍କ। କେତେ ସୁନ୍ଦର।

ମୁନା ପୁନାରେ ଥିଲାବେଳେ ମୁଁ, ସାନଝିଅ ଲିଲି ଓ ନାତୁଣୀ ଚିଙ୍କି ଯାଇ ମାସେ ରହିଥିଲୁ। ସେଠି ଯେଉଁମାନେ ସାଙ୍ଗ ହେଲେ ସେମାନେ ଟ୍ରାନ୍ସଫର୍ ହୋଇ ବମ୍ବେରେ ରହୁଛନ୍ତି। ତାଙ୍କ ଘରକୁ ଝିଅ ନେଇଯାଏ ବୁଲିବାକୁ।

ଭାଇ ଭାଉଜ ଝିଅ ନେଇ କରିଯାନ୍ତି ଆମର ଯେଉଁମାନେ ନିଜ ଲୋକ ଅଛନ୍ତି ବମ୍ବେରେ ତାଙ୍କ ଘରକୁ ବୁଲିବାକୁ।

ଭାଉଜ ଉମା, ମୁନା ଜବରଦସ୍ତି ମୋତେ ବଜାରକୁ ନେଇ ମୋ ପାଇଁ ଦାମିକିଆ ଶାଢ଼ୀ କିଣି କରି ଦେଲେ। ଭାଉଜ ଝିଅ ସାଙ୍ଗରେ ମାର୍କେଟ ଯାଇ ପିଲାଙ୍କ ପାଇଁ ଲୁଗାପଟା କିଣାକିଣି କଲେ। ରହିଲି ବମ୍ବେରେ ଅଠର ଦିନ। ବହୁତ ଆନନ୍ଦ ଲାଗିଲା ଦିନ ଜଣାଗଲା ନାହିଁ। ୨୮ ତାରିଖ ଦିନ ଝିଅ ସାଙ୍ଗରେ ଆସିଲି ପ୍ଲେନରେ ଭୁବନେଶ୍ୱର।

ବମ୍ବେ ଏୟାର୍‌ପୋର୍ଟକୁ ଭାଉଜ ପଠାଇଥିଲା ଭାଇ ହାତରେ ଖାଇବାକୁ। ଭାଇକି ଦେଖି ମନ ମୋର ଅତୀତ କଥା ମନେ ପଡ଼ିଲା। ଯାହା ହେଉ ବମ୍ବେ ବୁଲା ଭଲରେ କଟିଲା। ବାଟ ଯାକ ଭାଇ ଭାଉଜଙ୍କ କଥା ମନେପଡ଼ିଲା। ଭୁବନେଶ୍ୱର ଏୟାର୍‌ପୋର୍ଟକୁ ଝିଅ ପୁଅ ଗାଡ଼ି ଧରି କରିଆସିଥିଲେ। ମୁନା ୮/ ୧୦ ଦିନ ରହି ଭୁବନେଶ୍ୱରରେ ପିଲାଙ୍କୁ ନେଇ ବମ୍ବେଗଲା। ସିଏ ଗଲା ପରେ ମୋର ମନ ଜମା ଭଲ ଲାଗିଲା ନାହିଁ। ଘରଟା ଲାଗିଲା ଶୂନ୍ୟ ଯେମିତି



Digitized by PPRACHIN, SOA

ଘର ଜଣକ ବିନା ଶ୍ରୀହିନ ହୋଇ ଯାଇଛି । ମନେ ପଡ଼ିଗଲା ସ୍ୱାମୀଙ୍କ କଥା । ଦୁଃଖରେ ମନ ଭାଙ୍ଗି ପଡ଼ିଲି । ନିଜମନକୁ ବୁଝାଇ ଭାବିଲି ମୋତେ ଯେଉଁ ଗୁରୁଦାୟିତ୍ୱ ଅଜାତି ଦେଇ ଯାଇଛନ୍ତି ଠାକୁର ପୂଜାଠାରୁ ଘରର ଭଲ ମନ୍ଦ ସବୁକିଛି ଏହି ଜଞ୍ଜାଳରେ ଘାରି ହୋଇ ପଡୁଛି ମୁଁ । ଘରର ନ୍ୟାୟ ନିମିତ୍ତ ସବୁ କରିବାକୁ ପଡ଼ିବ କାନ୍ଦିଲେ କ'ଣ ହେବ ? ପ୍ରଭୁ ମୋତେ ବଳ ଦିଅ ।

କାହ୍ନୁଚରଣ ଥିଲେ ଦୟାର ସାଗର ଏବଂ ପରୋପକାରୀ ସାହାଯ୍ୟକାରୀ । ଛାତ୍ର ଶିକ୍ଷକ ମଧ୍ୟରେ ଅତି ପ୍ରିୟ ଥିଲେ । ରିକ୍ସାବାଲାଠାରୁ ଉଚ୍ଚ ପଦବୀ ଅଫିସର ପର୍ଯ୍ୟନ୍ତ- ସମସ୍ତେ ଭଲ ପାଉଥିଲେ ତାଙ୍କୁ । ଆମେ ସବୁ ଆସିଛେ ଏକା ଯିବା ଏକା । ସାଙ୍ଗରେ ନ ଯିବେ କେହି ସଖା !!!

ତେଣୁ ଏହି ଜୀବନ କ୍ଷଣକ । ଏ ମଧ୍ୟରେ ଅନ୍ୟକୁ ସାହାଯ୍ୟ କରିବା ମଣିଷର ଧର୍ମ । ମିଛ ମାୟା ସଂସାର । ମଣିଷ ଲୋଭ, ମୋହ ଓ ମାୟାପ୍ରତି ଆସକ୍ତ । କେହି କାହାର ନୁହେଁ । ସବୁମିଥ୍ୟା । ଏସବୁ ମନ ବୁଝେନା । ଜୀବନର ଶୂନ୍ୟତା ମଧ୍ୟରେ ଆଜି ଖାଲି ସ୍ୱାମୀଙ୍କର ଅସ୍ତିତ୍ୱ ମୁଁ ଅନୁଭବ କରୁଅଛି - ଯାହା ସେହି ଅଲିଭା ସ୍ମୃତି ଭିତରେ ମୋର ବଞ୍ଚିବାର ଏକମାତ୍ର ପ୍ରାଥେୟ ହୋଇ ରହିଛି !!!





Digitized by PPRACHIN, SOA

# ଶ୍ରଦ୍ଧାଞ୍ଜଳି

ବକ୍ତାରପୁରଟି ଗାଁଟି ତୁମର
ସେହି ତୁମ ଜନ୍ମ ମାଟି ॥୧॥

ଦୁଃଖ କଷ୍ଟ ସହି ବଢ଼ିଲ ସେଇଠି
ସେଇଠି ତୁମର ଷଠି ॥୨॥

ତୁମ ପାଶେ ରହି ଦୁଃଖସୁଖ ସହି
ବାହିଲି ଜୀବନ ନାଆ
ଚାଲିଥିଲେ ଦୁହେଁ ହାତେ ହାତ ଧରି
ହେଉଥିଲେ ମୋର ସାହା ॥୩॥

ପିତା ମାତା ଭାଇ ଭଉଣୀ ମାନଙ୍କୁ
କରୁଥିଲ ଅତିଶ୍ରଦ୍ଧା।
ବିପଦେ ଆପଦେ ସେବା କରୁଥିଲ
ସାହା ହେଉଥିଲ ସଦା ॥୪॥

ଷାଠିଏ ବର୍ଷର ଅନୁଭୂତି ଆଜି
ପଡ଼ିଯାଏ ମୋର ମନେ
ଶାଶୁଘର ମୋର ବୈକୁଣ୍ଠପୁର
ଭାବେ ମୁହିଁ ପ୍ରତିକ୍ଷଣେ ॥୫॥

ଯେତେ ବାଧାବିଘ୍ନ ପଡୁଥିଲେ ମୋତେ
ବୁଝାଉ ଥିଲହେ ତୁମେ
ତୁମରି ଆଦେଶ ପାଳୁଅଛି ମୁହିଁ
ପଡ଼ିଯାଏ ସବୁ ମନେ ॥୬॥



Digitized by PPRACHIN, SOA

ଗାଁଟି ତୁମର ଥିଲା ଅତିପ୍ରିୟ
କଲ କେତେ ଉପକାର
ଗାଁ ଲୋକେ ଆଜି ଝୁରି ହଉଛନ୍ତି
ସବୁ ଆଜି ଅନ୍ଧକାର ।।୭।।

ଯେତେବେଳେ ତୁମ୍ଭେ ଯାଉଥିଲ ଗାଁ
କେତେ ଖୁସି ପରିହାସ
ଗାଁ ଭଲମନ୍ଦ ବୁଝୁଥିଲ ତୁମେ
ମନରେ ନବହି କ୍ଲେଶ ।।୮।।

ସମସ୍ତଙ୍କୁ ଛାଡ଼ି ଚାଲିଗଲ ତୁମେ
ହରି ହର ଭବନରୁ
କପୂର ଯାଇଛି କନା ତ ପଡ଼ିଛି
ବଳ ଦିଅ ମୋତେ ପ୍ରଭୁ ।।୯।।

ସାରାଂଶ ରୂପରେ ଫେରିତ ଆସିଲ
କୂଳ ରକ୍ଷା କରିବାକୁ
ପ୍ରଭୁ ଜଗନ୍ନାଥ ମିନତି ମୋହର
ଦୀର୍ଘାୟୁ କର ହେ ତାକୁ ।।୧୦।।





Digitized by PPRACHIN, SOA



## ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର

# ମମତାର ଧାରା

ବୋଉ ମୋର ଲେଖିକା କବି - ଗୃହକର୍ମରେ ନିପୁଣା-ସ୍ନେହୀ, ପରୋପକାରୀ ଅସରନ୍ତି ଆଦରର ଭଣ୍ଡାର ! ଆମେ ୭ ଭାଇ ଭଉଣୀ ତା'ରି ଆଦର୍ଶରେ ହିଁ ଗଢ଼ି ଉଠିଛୁ ! ଘର କଣରେ ବସି ସେ ଏତେ ସୁନ୍ଦର ଲେଖିପାରେ - ସିଲେଇ କରେ ସମସ୍ତେ ଜାଣନ୍ତି - ବିବାହ ବ୍ରତରେ ତା'ର ଲେଖା କବିତା ସମସ୍ତେ ପଢ଼ନ୍ତି - ଆଜି ଏହି 'ଅଭୁଲା ସ୍ମୃତି' ସଙ୍କଳନଟି ପ୍ରକାଶ ପାଇଛି । ଆଶା ନିଶ୍ଚିତଭାବେ ନନାଙ୍କର ଆଶୀର୍ବାଦ ଧାରା ଝରି ଆସିବ । ଜଗନ୍ନାଥ ଆଶୀର୍ବାଦ କରନ୍ତୁ । ବୋଉର ଲେଖନୀ ଋଦ୍ଧିମନ୍ତ ହୋଇଉଠୁ ।

ଇତି

ବୁଲୁ, ଲଲି ଡଲି, ମୁନା

ବୁଢ଼ା, ବାବୁଲା, କାବୁଲା

Digitized by PPRACHIN, SOA